


ଶ୍ରୀ ଯଦୁମଣି ପୁରୋହିତଙ୍କ ଦ୍ୱାରା
ପ୍ରଣୀତ
ଓ
ପ୍ରକାଶିତ

ପ୍ରଥମ ସଂସ୍କରଣ

**Printed by V. Kar,**
THE UTKAL SAHITYA PRESS,
**CUTTACK.**
**1932.**

ମୂଲ୍ୟ ଚାରି ଅଣା ମାତ୍ର ।

# ଉତ୍ସର୍ଗ



ସାହିତ୍ୟାନୁରାଗୀ ସଦାଳାପୀ ପରମ ଭକ୍ତିଭାଜନ

ଶ୍ରୀମାନ୍ ଲାଲ ଜୟନାରାୟଣ ଦେବ ମହୋଦୟ

ଉଦାରଚରିତେଷୁ

ମାନ୍ୟବର ଲାଲ ସାହେବ,

ଓଡ଼ିଆ ସାହିତ୍ୟ ପ୍ରତି ମୋର ସାମାନ୍ୟ ଅନୁରାଗ ଦେଖି ଆପଣ ମୋ ପ୍ରତି ଯେଉଁ ସୌଜନ୍ୟ ପ୍ରକାଶ କରିଅଛନ୍ତି, ତାହା ମହତ୍ ହୃଦୟର ପରିଚୟକ । ଆପଣଙ୍କର ଜନକ ପ୍ରାତଃସ୍ମରଣୀୟ ରାଜା ସାର୍ ବାସୁଦେବ ସୁଢ଼ଳ ଦେବ ଏବଂ ଜ୍ୟେଷ୍ଠ ଭ୍ରାତା ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ଓଡ଼ିଆ ସାହିତ୍ୟ ତଥା ସାହିତ୍ୟସେବକମାନଙ୍କ ପ୍ରତି ଯେଉଁ ଅନୁରାଗ ଦେଖାଇ ଯାଇଅଛନ୍ତି, ସେହି ଆଦର୍ଶରେ ଆପଣ ଅନୁପ୍ରାଣିତ ହେବା ସ୍ୱାଭାବିକ ।

ଆପଣଙ୍କର ମହନୀୟ ସାହଚର୍ଯ୍ୟରୁ ମୁଁ ଉପଲବ୍ଧି କରିଅଛି ଯେ, ଆପଣ କବିଗୁରୁ କାଳିଦାସଙ୍କ 'ମେଘଦୂତ' କାବ୍ୟ ପ୍ରତି ସତତ ଅନୁରାଗୀ । ଓଡ଼ିଆ ସାହିତ୍ୟକ୍ଷେତ୍ରରେ 'ମେଘଦୂତ' ତୁଲ୍ୟ କାବ୍ୟର ଆବିର୍ଭାବ ଅସମ୍ଭବ, ମାତ୍ର ମନର ଆବେଗରେ ମହାକବିଙ୍କ ପ୍ରଦର୍ଶିତ ମାର୍ଗକୁ ଅନୁଧାବନ କରି ଏହି **'ନୀହାରଦୂତ'** ନାମକ କ୍ଷୁଦ୍ର କାବ୍ୟ ରଚନା କରି ଆପଣଙ୍କ ନିକଟରେ ଅର୍ପଣ କଲି, ସାଦରେ ଗୃହୀତ ହେଲେ ଚରିତାର୍ଥ ହେବି । ଇତି ।

ବଣାଇଁଗଡ଼
୫।୫।୧୯୩୬

ଏକାନ୍ତ ଅନୁଗତ
ଶ୍ରୀ ଯଦୁମଣି ପୁରୋହିତ

# ନୀହାରଦୂତ



## କଳହଂସକେଦାର

ଅକାର୍ଯ୍ୟେ ପିତା ଅବସାଦକୁ ସାଧି
ତାଙ୍କ ଧିକ୍କାର ହୃଦେ ଥିବାରୁ ବାଧି
ଶୁଭ୍ର ସୌଧମଣ୍ଡିତ ତେଜି କଟକ
କାନ୍ତାବିହୀନ କେହି ଏକ ଯୁବକ
ଭ୍ରମି ଉତ୍କଳରାଜ୍ୟ—ପ୍ରତୀଚୀବନେ
ଅତି ବିରାଗବଶେ ବିକ୍ଷିପ୍ତ ମନେ

ବେଦବ୍ୟାସ-ଆଶ୍ରମେ ହେଲା ପ୍ରବେଶ
ହୃଦେ ପୂରାଇ ପ୍ରିୟାବିଚ୍ଛେଦ କ୍ଳେଶ ।

ମହାଯଶା ମୁନୀନ୍ଦ୍ର ଆଶ୍ରମପୁର
ତା ନେତ୍ରେ ବିସ୍ତାରନ୍ତେ କାନ୍ତି ମଧୁର
ଦୃଷ୍ଟ ସନ୍ତର୍ପିତରେ ଉମା ତ୍ର୍ୟମ୍ବକ
କଲା ସୁଖେ ନିବାସ ତହିଁ ଯୁବକ,

ବିଦାରି ଶ୍ରେଷ୍ଠନାଗପୁର ଧରଣୀ
ଶିର ମୁକୁଟ ନୀଳ ଗିରୀନ୍ଦ୍ରଶ୍ରେଣୀ
ହିମାଦ୍ରିସୁତା-ଗଙ୍ଗା କାଳିନ୍ଦୀ ସମ
ଯହିଁ ଶଙ୍ଖ କୋଇଲ ରମ୍ୟ ସଙ୍ଗମ ।

କଣ୍ୱୀନ୍ଦ୍ର ମୁନିବର-କରକମଳ—
ପ୍ରଦତ୍ତ ପ୍ରାତଃ ସନ୍ଧ୍ୟା ନୀଳ ନିର୍ମଳ
ସୂର୍ଯ୍ୟାର୍ଘ୍ୟନୀର ସମ ବ୍ରାହ୍ମୀ ବାହିନୀ
ଯହିଁ ହୋଇଛି ମନ-ମୋଦଦାୟିନୀ,

ଅଦୂରେ ରେଲ ସେତୁ ନଦୀବକ୍ଷରେ
ଶାରଦାକାଶେ ତାର୍ପଥ ଲକ୍ଷ୍ୟରେ

ସ୍ଥାପି ବଙ୍କିମସିଦ୍ଧି ପାନ୍ଥ ଜନର
ତହିଁ ହୋଇଛି ଉନ୍ନତିବତ୍ମକର ।

ନଦୀକୂଳନେ ପୂର୍ବ ପଶ୍ଚିମ କ୍ରମେ
ରାଜଇ ପଣ୍ୟଜୀବିବସତି ରମ୍ୟେ ।

ନିତ୍ୟ ଆଗତାଗତ ଧୌମ ରଥର
ଘର୍ଘରନାଦେ ସ୍ଥାନ ସଦା ମୁଖର ।

ଯା ଯାମ୍ୟତଟରେ ମହାମନା ବ୍ୟାସଙ୍କ
ପବିତ୍ରାଶ୍ରମ ଟେକିଅଛି ମସ୍ତକ,

ବିଶାଳ ଶାଳାର୍ଜୁନ-ପଲାଶବନ
ନୟନାନନ୍ଦ ନିତ୍ୟ କରେ ବର୍ଦ୍ଧନ ।

ଉଜ୍ଜଳତଳେ ଶିବସଦନ ସମ
ବ୍ୟାସମନ୍ଦିରଶୋଭା କି ମନୋରମ !
ତାର ନିକଟେ ସ୍ଥିତି ତାଙ୍କୁ ନିର୍ଦ୍ଧ୍ୟାରେ
ବଞ୍ଚେ ଯୁବକ ଯୁଗ ନିଜ ଜାୟାରେ ।

ବିଷାଦେ ଲଭି ପ୍ରିୟାବିଚ୍ଛେଦ ଖେଦ
ଦୈବପ୍ରତିକୂଳତା ଭାବି ଅଚ୍ଛେଦ୍ୟ
ଅତି ଦୁର୍ବହ ମଣି ନିଜ ଜୀବନ
ତେଜଇ ଅବିରତ ନେତ୍ରୁଁ ଜୀବନ ।

ଏମନ୍ତେ କଷ୍ଟବନ ଗହିଁ ନିବାସ
କରୁଁ ଯୁବକ ଶେଷ ଆଶ୍ୱିନ ମାସ,
ମୟୂଖୋଜ୍ଜ୍ୱଳ ଶୁଭ୍ର ଶରଦକାଳ
କଲା କବଳ କାଳ-କରାଳବ୍ୟାଳ ।

ନ ଖେଳେ ନଭେ ଆଉ ଶ୍ୱେତ ଜଳଦ,
ନାହିଁ ହ୍ରାଦିନୀଲୀଳା ଆଶା ବିଶଦ,
ଆବିଳ ଜଳ ଦୂର ହେଲା ନଦୀର,
କ୍ରମେ ତା କଳଧ୍ୱନି ଅତି ଗମ୍ଭୀର,
ନଭସ-ନଭ-ଶିଖୀ, ବାରି ମଧୁର,
ତାର ତାରକା, ଶୀତ-କର ବିଧୁର,
ରମ୍ୟଦର୍ଶନ କ୍ରମେ ହେଲା ବିଲୀନ,
ନିପୃତବଳ ସିନା ବିଶେ ବଳନ !

ବିଧାତା ହୋଇବାରୁ ଅତ୍ୟନ୍ତ ବାମ
ଯୁବା ଭେଟିଲା ମାର୍ଗଶିର ପ୍ରଥମ ।

ନାଗରୀ ମହୀ ଶିର ମୁକୁଟ ପରି
ଖେଳେ ବ୍ରୀହିଶସ୍ୟାରେ ବାଷ୍ପଲହରୀ,

ପ୍ରାତଃ ଭାନୁଦେବଙ୍କ ମୁଖ ଦର୍ଶନ
ତାର ପ୍ରକାଶେ ସଦା ନରନୟନ,
ଅତି ଦୁର୍ଲ୍ଲଭ ମଣେ ହେମନ୍ତକାଳେ
ରହି ବ୍ୟାସ-ଆଶ୍ରମ ଶିଖରମାଳେ ।

କ୍ରମେ ନୀହାରମାଳା ନଦୀବକ୍ଷରେ
ତ୍ୱରତ ରମ୍ୟ କ୍ରୀଡ଼ା ବନପ୍ରାନ୍ତରେ
ଉଚ୍ଚ ଗିରୀନ୍ଦ୍ରଶ୍ରେଣୀ କରି ଭେଦନ
ପ୍ରାଚୀ ଅଞ୍ଚଳେ ଧୀରେ କରେ ଗମନ ।

ପଠଦଶାରେ ଯୁବା କବିବରଙ୍କ
ଅମର ଭାଷାମୟୀ ଛନ୍ଦୋବଦ୍ଧମକ
ମେଘଦୂତାନୁବାଦ ପଠନ କରି
ସଞ୍ଚିଥିଲା ହୃଦୟେ ଭାବଲହରୀ,

କ୍ରମେ ନୀହାରେ ମଣି ମେଘସମାନ
କାମୀ ଯୁବକ ହୃଦେ କାହିଁ ବା ଜ୍ଞାନ
ବନ୍ଧୁ ଅଧର କୁନ୍ଦ ସୁମନହାର
କଳ୍ପି ଅଭିନନ୍ଦନ ଯୁବା ତାହାର ।

ଛାୟା ଆତପସମ ମେଘନୀହାର,
ଯକ୍ଷ ସମାନ ବୁଦ୍ଧି କାହିଁ ତାହାର,
ପେଷିଲା ଦୂତ ନିଜ ପ୍ରିୟା ପାଶକୁ
ରଚି ଉଦନ୍ତମୟ ନବ ଭାଷକୁ ।

କୌଶିକ ତପସ୍ୟାରୁ ଜାତ ତୁମ୍ଭର,
ତୁମ୍ଭେ ମହତବୀର୍ଯ୍ୟ ମାହାରବର,

ମୋ ଅନୁରୋଧ ତୁମ୍ଭଠାରେ କଦାପି
ଅନାଦର ନ ହେବ ଭାବେ ଅଦ୍ୟାପି,

ଯେଣୁ ପ୍ରତାପବାନ ଗାଧିନନ୍ଦନ
ବିଧାତା ସଙ୍ଗେ ବାଦ କରି ସର୍ଜନ

ଯତ୍ନେ ରଖିଲେ ନିଜ ବ୍ରାହ୍ମଣ୍ୟ ଠାଣ,
ତୁମ୍ଭେ ତାହାର ସାକ୍ଷୀ ମହାମହାନ ।

ଏଣୁ ମୋ ଏ ଆତୁର ହୃଦୟକଥା
ଅବଶ୍ୟ ତୁମ୍ଭେ ଘେନ ପାର ସର୍ବଥା,

ଯାଅ ତନୟ ମୋର ଘେନ ସତ୍ୱର
କଣ୍ଠକ ଯାଏ ଥିବେ ତୁଷାରଧର ।

ଯେଉଁ ପଥେ ଗମିଲେ ତୁମ୍ଭେ ଅକ୍ଳେଶେ
ପ୍ରବେଶି ଯିବ ମୋର ନିବାସ ଦେଶେ,

କରୁଅଛ ନିର୍ଦ୍ଦିଷ୍ଟ ଅଗ୍ରେ ତାହାର,
ଶୁଣ ଶ୍ରବଣ ଦେଇ ଶ୍ରେଷ୍ଠ ମାହାର ।

ପରୋପକାରପରାୟଣ ସାଧୁର
ହୃଦୟପଦ୍ମ ସଦା ଅମୃତ-ପୂର,

ଏଣୁ ମୋ ଅନୁରୋଧବାଣୀ ଗ୍ରହଣେ
କ୍ଳେଶକୁ ନ ବଳିବ ଭାବେଁ ମୁଁ ମନେ ।

ପ୍ରଭାତୁ ତିନି ଦଣ୍ଡ କର ଗମନ
ଶ୍ରାନ୍ତ କରିବ ତୁମ୍ଭେ ଅପନୋଦନ
ଯେଉଁ ସ୍ଥାନମାନଙ୍କେ ଯେ ଉପକାର
ଲଭିବ ଶୁଣ ବେଗେ ବର୍ଣ୍ଣିବ ତାର ।

ଏଠାରୁ କପୃଦୂରେ ଯାଇ ମାହାର,
ତୁମ୍ଭେ ଦେଖିବ ନେତ୍ରେ ଦୃଶ୍ୟ ଯାହାର,
ସେ ବାଙ୍କୀ ବଜାରର ଛବି ମୋହନ
ଦେଖିଲେ ତୁମ୍ଭ ଚିତ୍ତ ହେବ ମଗ୍ନ
ନିର୍ମଳ ଶୋଭିସିନ୍ଧୁ ରସଲହରୀ—
ମାଳା ମଧ୍ୟରେ ସର୍ବ କ୍ଳେଶ ବିସ୍ମର ।

ତା ଅଳ୍ପ ଦୂରେ ତୁମ୍ଭ ଗମ୍ୟ ସରଣୀ
କଳନାଦିନୀ ମାଲିନୀର ବ୍ରାହ୍ମଣୀ
କଲୁଆରବାଲାଙ୍କ ଗୀତ ଶ୍ରବଣେ (୧)
ନାଚେ ସୈକତଶେଯେ ଆନନ୍ଦମନେ ।

ଅଦୂରେ ବାଣେଶଙ୍କ ଥାନା ସଦନ
ଟେକିଛି ଲୋହିତାଭ ରମ୍ୟ ଛଦନ,
ତା ଗୃହପାଶ ଘେର ଆମ୍ରକାନନ
କରେ ଦର୍ଶକମନନେତ୍ର ରଞ୍ଜନ ।

(୧) ପଶ୍ଚିମଦେଶୀୟ ଏକ ପଣ୍ୟଜୀବୀ ଶୌଣ୍ଡିକ ଜାତିବିଶେଷ ।

ପ୍ରତ ଶୌଣ୍ଡିକବାସରେ ତହୁଁ ବଜାର
ବସେ ଜମନ୍ତ୍ର ଜନ ବନ୍ଧୁ ହଜାର,
ବ୍ରାହ୍ମୀ ସଲଳେ ତାଙ୍କ ସଲଳକ୍ରୀଡ଼ା
ଦେଖିଲେ ତୁମ୍ଭ ନେତ୍ରେ ବ୍ୟାପିବ ବ୍ରୀଡ଼ା ।

ବନ୍ୟ ବାଳକଗଣ ତୀର କାନନେ
କର ମଧୁରଗାନ ଆନନ୍ଦମନେ
ଚଗଇ ବସ୍ତ୍ରତଟୀ ତୁମ୍ଭ ହୃଦର
ନଷ୍ଟେଁ ହୋଇବେ ଅତ ଆନନ୍ଦକର ।

ସହ ନ ପାର ବନ୍ଧୁ ! ମିହିରଙ୍କର
ହୈମନ୍ତ ସ୍ୱର୍ଣ୍ଣିକର ମଧୁରତର,
ଏଣୁ ପାନାଉନସ୍ତ ବଳାଙ୍ଗୀଙ୍କର (୧)
ତୁମ୍ଭ ଦର୍ଶନେ ହେବ ଅତ୍ୟନ୍ତ ଦୂର ।

ଶୀଘ୍ର ଗମିବ ତହୁଁ ଗିରକନ୍ଦର
ଭେଦ ଆନନ୍ଦମନେ ନୀହାରବର,
ମଧ୍ୟାହ୍ନ ମାରତଣ୍ଡକର ପ୍ରଖର
ହେଲେ ବଶ୍ରାମସ୍ଥାନ ଶୁଣ ତୁମ୍ଭର ।

ଚକ୍ଷ୍ମାହ୍ଟର ଗିରିକନ୍ଦର କନ୍ଦରେ
ବଶ୍ରାମି ପ୍ରତ୍ୟୁଷରୁ ଗମ ସତ୍ୱରେ,

---

(୧) ମଦ୍ୟପାନାନନ୍ତର ଉନ୍ମତ୍ତ ନୃତ୍ୟ ।

ନଭସ୍ପର୍ଶୀ ଗିରୀଶ ଉଚ୍ଚ ଶିଖରେ
ବସି ଚାହିଁବ ଯଦି ନମ୍ର ଦେଶରେ,
ଦେଖିବ ବାଣରାଜ-ରାଜସରଣୀ
କିବା ବନବାଳାର ମାଙ୍ଗବେଣୀ ।

ଲତାପଲ୍ଲବମୟ ତୀରଶୋଭନା
ନମ୍ନେ ଛାଡ଼ାର ଚଞ୍ଚଳ ଝରଣା
ଶୀତଳ ନୀଳମାଭ ଅମୃତ ନୀର
ବହୁ ଝର୍ଝରନାଦେ ଗମେ ସଧୀର ।

ପର୍ବତଗାତ୍ରେ ରଙ୍ଗେ କି ମନୋରମ
ସିନ୍ଦୂରଞ୍ଜିତଶିଳା ଋଷି-ଆଶ୍ରମ,
ତହିଁ ପଥିକଗଣ ଆନନ୍ଦମନେ
ନମି ଗମନ୍ତୁ ପଥ ଘୋର କାନନେ ।

ବିଶ୍ରାମି ସନ୍ଧ୍ୟାଯାଏ ତହିଁ ନୀହାର,
ପ୍ରତ୍ୟୁଷ ପାଦ ପୂର୍ବେ କର ସଞ୍ଚାର,
ଗିରିଗାତ୍ରରୁ ତୁମ୍ଭ ଯୋଗ୍ୟୋପାଦାନ
ଲଭ ହୋଇବ ମିତ୍ର ! ସ୍ୱଳ୍ପଭବାନ ।

ତୁମ୍ଭ ଗନ୍ତବ୍ୟ ମାର୍ଗେ ତୁଷାରଧର,
ଦେଖିବ ନବୋଦୟ ଭାସ୍କରଙ୍କର,
ଗିରିଶିଖରେ ପଡ଼ି ସୁରକରଣ
ହେବ କନକମୟ ଗିରିକାନନ ।

କେଦାରେ ହୈମନ୍ତିକ ଧାନ୍ୟସକଳ
ଅନନ୍ତ ଶିରେ ବହି ପୂର୍ଣ୍ଣ ତଣ୍ଡୁଳ
ଖର୍ଜୁରପୁଷ୍ପ ସମ ନିଜ କନକ-
କାନ୍ତିରେ ଦିଶୁଥିବେ କି ଝକଝକ,
ପଦ୍ମ ପତନ ରମ୍ୟ ତୁଷାରକଣେ
ପ୍ରତିଫଳିତ ହୋଇ ସୂର୍ଯ୍ୟକିରଣେ
ସ୍ୱର୍ଣ୍ଣ ମୌକ୍ତିକ ହାର କାନନଗଳେ
ପିନ୍ଧାଇ ଦେଉଥିବେ ପ୍ରେମବହ୍ୱଳେ ।

ଅନନ୍ତେ ଅବତର ଗିରିକନ୍ଦରୁ
ଯିବ ଅଗ୍ର କାନନେ ଭୂମ୍ୟେ ପ୍ରାନ୍ତରୁ,
ଦେଖିବ "ଦେଉଦର" ଗଣ୍ଡ ଉପରେ
ଚକ୍ରବାକମିଥୁନ ଅନନ୍ଦଭରେ,
ନିରେଖି ବେନି ତୀରେ ଉଚ୍ଚ ଭୂଧର
ବିଶାଳ ଶୁଭ୍ର ଭ୍ରମ ଦେହ ତୁମ୍ଭର
ପ୍ରକଳ୍ପି ହୃଦେ ପ୍ରାତଃ କାତରସ୍ୱନେ
ଗାଇବେ ପ୍ରେମଗୀତ ଅନନ୍ଦମନେ ।

ଅବଶ୍ୟ ମନେ ସ୍ମର- ମୋର ବଚନ
ତହିଁ ନ କରି ସ୍ଥିତି ଅର୍ଦ୍ଧକ୍ଷଣ
ନକ୍ରସେବିତ ସେହି ଗଣ୍ଡସଲିଳା—
ନଦୀପଥେ ରଚିବ ଗମନଲୀଳା ।

(୧) ତୁମ୍ଭ ଗନ୍ତବ୍ୟ ମାର୍ଗ ପଶ୍ଚିମଦେଶେ
ରାଜେ ଯେ ଗିରିକୁଳ ମେଘାଭ ବେଶେ,
ସେ ଅଦ୍ରିମାଳ କୂଳ କୁଞ୍ଜ କାନନେ
ବିହରନ୍ତି ମାତଙ୍ଗେ ଆନନ୍ଦମନେ ।
ମିତ୍ର ସେ ଗିରିଙ୍କର ଗଣ୍ଡରେ ପଶି
ଏ ହିମନ୍ତେ କରଣୀ କର ପରଶି
ନିର୍ମଳ ଚନ୍ଦ୍ରକରେ ହୋଇ ପ୍ରମତ୍ତ
କରନ୍ତି ଦନ୍ତାବଳେ କ୍ରୀଡ଼ା ସତତ ।
ମାନ୍ଧାରଶ୍ରେଷ୍ଠ ଏହି ଗିରିମାଳକୀ
ନଉତ କୁଞ୍ଜେ ବନ୍ଧୁ କନ୍ଧବାଳକା
କନ୍ଧଯୁବକ ସଙ୍ଗେ ନିଶା ସକଳ
ପୂର୍ତ୍ତି କରନ୍ତି ଶୃଙ୍ଗ ନୃତ୍ୟେ କେବଳ ।
ସେ ଗିରିନିର୍ଝରଣୀ-କୂଳେ ଏକାଳେ
ଗାଙ୍ଗପୁରାଧୀଶ୍ୱର ସ୍ୱସେନାମାନେ
ହୋଇ ପରିବେଷ୍ଟିତ ମୃଗୟା ଅର୍ଥେ
ଅସି ରଞ୍ଜନ୍ତି ବନବାସୀ ପର୍ବତେ ।
(୨) ପୂର୍ବ ପ୍ରଦେଶେ ମହା ହିମ ଅଚଳ
ନନ୍ଦନ ସମ ଯେଉଁ ଶିଖରମାଳ

(୧-୨) ଏହି ପ୍ରାକୃତିକ ଗିରିଶୋଭାଟି ଧରଙ୍କଠାରେ
ସୁନ୍ଦରଭାବରେ ଉପଲବ୍ଧ ହୁଏ ।

ବ୍ୟାପିଛି ଯାମ୍ୟୋତ୍ତରେ ହୋଇ ନଗଶ୍ରେଣୀ
ଯଥା ପ୍ରକୃତବାଳା କୁନ୍ତଳବେଣୀ,
ତା ବକ୍ଷେ ଶୁଭ୍ର ଗଜଦନ୍ତ ଶୋଭନ
ଦୂରୁ ଦେଖିବ ଯାହା ହିମସ୍ରଜନ,
ସେ ଅଟେ ହଂସସ୍ୱଳ ଜଳପ୍ରପାତ,
ଖଣ୍ଡାଧାର ନାମେ ଯେ ହୋଇଛି ଖ୍ୟାତ ।
ସେ ଗିରମାଳା ଶିରେ ତୁଷାରଧର
ଦେଖିବ ଯେଉଁ ବନ୍ୟ ପକ୍ଷୀନିକର
ମେଘ ମଧ୍ୟେ ବିମଳ ଆକାଶ ପର
ଦୂରେ ପ୍ରସାରେ ନିଜ ଶୋଭିଲହରୀ,
ସେ ସବୁ ରମ୍ୟସ୍ଥାନେ କର ଆଶ୍ରୟ
(୧) ହନ ହରନ୍ତି "କୋହ୍ଲ" ବାଲା ନିଚୟ ।
ଏ ଦ୍ୱୈମନ୍ତ୍ରୀ ଋତ୍ବନା ସେ ଗିରିବନ
କମ୍ପାଏ କୋହ୍ଲବାମା ଝୁମରୀ ସ୍ୱନ,
ତହୁଁ ନିର୍ମଳ ସ୍ୱରଧାରି ନିଃସର
ହଳୀସକଷିନୋଦ ତାଲେ ପ୍ରଚର
ମାଦଳ ରଙ୍ଗେ କୋହ୍ଲଯୁବକଙ୍କର
ମନ କରଇ ମୁଗ୍ଧ ନିଶି ବାସର ।

---

(୧) କୋହ୍ଲ ଓ ଭୂୟାଁ ଏହି ରାଜ୍ୟର ଆଦିମ ଅଧିବାସୀ ।

ତହୁଁ ଦେଖି ସ୍ୱର୍ଣ୍ଣାଭ ସର୍ଷପପଦା
ବଚତ୍ର ରବକ୍ଷେତ୍ର ଶ୍ୟାମସମ୍ପଦା,

ପର୍ବତଗାତ୍ରେ ଶୁଭ୍ର ଶିଶିରଧର !
ଶାରଦ ପ୍ରାଚୀପଟେ ମନେ ତୁମ୍ଭର

ସଦା ଜାଗ୍ରତ ହେବ ଏକା ସେକାଳେ
ତୁମ୍ଭ ନୟନ ଅଗ୍ରେ ବନାନ୍ତରାଳେ ।

ତଦନ୍ତେ ଅଗ୍ରେ ଗମି ଅତି ସତ୍ୱର
ଦେଖି ଅପୂର୍ବ ଶୋଭା ନୀହାରବର,

ଶିଳା ଉପରେ ଦେଇ ଶତ ଲମ୍ଫନ
ଲଟେଚ ବ୍ରାହ୍ମୀ ଆନନ୍ଦେ ଖର କ୍ରୀଡ଼ନ ।

ହଂସ ସାରସ ଚକ୍ରବାକ ସଙ୍ଗୀତ
ମଧୁର ତାନେ ସଦା ସେ ମୁଖରିତ,

ଉଭୟ ତୀର ତାର ନାନା ସୁମନ-
ବୃକ୍ଷମାଳାରେ ହସେ ଅତି ଶୋଭନ ।

ଋତ ଗମନ ସୁଖେ ନଦୀବକ୍ଷରେ
ବିଶ୍ରମି ଶ୍ରମ ନାଶି ଗିରିଶୃଙ୍ଗରେ

ଗ୍ରହି ଶୃଙ୍ଗି ମାଲକାକରୁ ପାଥେୟ
ମିଳବ ବାଣରାଜ୍ୟ ନୀହାରରାୟ ।

ଯେଉଁ ପ୍ରଦେଶ ଦାକ୍ଷିଣାତ୍ୟବିଖ୍ୟାତା
ବିଶ୍ୱବିଶ୍ରୁତକୀର୍ତ୍ତି ସ୍ୱଧର୍ମବେତ୍ତା

ତ୍ରିନେତ୍ରକଦମ୍ବଙ୍କ ସୁବଂଶଧର
ଯଶୋରଶ୍ମିମଣ୍ଡିତ ବୀରଶେଖର —

ରାଜା ପ୍ରତାପ ଦେବ ବାହୁବଳରେ
ବିଜିତ ହୋଇ ଅତ ପୂର୍ବକାଳରେ

ବଣାଇଁ ନାମେ ଏବେ ହୋଇଛି ଖ୍ୟାତ,
ନେତ୍ରେ ଦେଖିବ ତାହା ନୀହାରନାଥ ।

ଅଜ୍ଞ ସେ ବଣାଇଁର ଶାସନଭାର
ଘେନ ଯେ ଛନ୍ତି କରେ ସେ ମହୋଦାର

ସ୍ୱଗୁଣେ କରି ନିଜ ପରଜାମନ
ସୁଖେ କରନ୍ତି ବନ୍ଧୁ ! ପ୍ରଜାପାଳନ,

ଯାହାଙ୍କ ତେଜ ବଳ କର ଦର୍ଶନ
ଭୟେ ଶତ୍ରୁ ଲଭଇ ହୃଦକମ୍ପନ ।

ଯାଙ୍କ ଶାସନଗୁଣେ ପରଜାମନ
କଦା କୁମାର୍ଗେ ନ ରତଇ ଗମନ ।

ସେ ମହାଭୁଜଙ୍କର ଭୁଜ ପ୍ରତାପେ
ସର୍ବେ ଭୁଞ୍ଜନ୍ତି ସୁଖ ସଦା ଅତାପେ ।

ହୃଦ ତାଙ୍କର ଗଙ୍ଗାନୀରୁ ନିର୍ମଳ,
ଦୟାସାଗର ସେ ତ ବନ୍ଧୁବତ୍ସଳ ।

ନାମ ତାଙ୍କର ମିତ୍ର, ଧରଣୀଧର
ନିଜ ଧଇର୍ଯ୍ୟେ ସେ ତ ଧରଣୀଧର,

ଦେଖିଲେ ତାଙ୍କ ସ୍ନେହ ବଦନଶିଖୀ
ତୁମ୍ଭ ମାର୍ଜିକେଷଣ ଦେବ ବସ୍ତ୍ର ।

ଶୁଣି ସ୍ୱଜନମୁଖେ ସେ ରାଜଯଶ
କର ହୃଦ-ଦୌର୍ବଲ୍ୟସମ୍ବନ୍ଧ ନାଶ,

ଯଶ ଯେ ରାଜ୍ୟ ମଧ୍ୟେ ଅତି ସତ୍ତରେ
ରାଜଯଶ ସଙ୍ଗୀତ ଶୁଣି କର୍ଣ୍ଣରେ ।

ପନ୍ଥବ ପଥ ମଧ୍ୟେ ମାହାରବର,
ସାତକୂଟାଦ ଭଦ୍ରପଲ୍ଲୀନିକର,

କୁଳପାଳକାଗଣ ଗ୍ରାମବାସିଙ୍କ
ତୁମ୍ଭ ଗମନେ ହୋଇ ମନେ ସଶଙ୍କ

ପ୍ରଭାତୁ ନଦୀଜଳେ ଗାତ୍ରମଜ୍ଜନ
ରତ ରଙ୍ଗଲେ କର ମୌନ ଧାରଣ

ଆର୍ଦ୍ର ବସନେ କକ୍ଷେ କଳସ ଧରି
ଫେରୁଥିବେ ନଦୀରୁ ସେ ଥରି ଥରି,

କମଳବନ୍ଧୁ ଦିବାକର ତାଙ୍କର
ଦେଖି ବଦନଲକ୍ଷ୍ମୀ-କମଳାକର

ବଦାରି ତୁମ୍ଭ କରେ ସେକାଳେ ତାଙ୍କ
ମଣ୍ଡିବେ ସ୍ୱର୍ଣ୍ଣକରେ ମୁଖଶଶାଙ୍କ ।

ସ୍ମର ମୋ କଥା ମନେ ଏକା ସେକାଳେ
ନ ଭୁଲି ବରାଙ୍ଗନା ଅପାଙ୍ଗଜାଳେ

ଅତିକ୍ରମି ସତ୍ୱର ନଦୀସରଣୀ
ଯିବ ଅଗକୁ ବେଗେ ମେଘାରମଣୀ ।

ଦେଖିବ ପଥ ମଧ୍ୟେ ପଲ୍ଲୀନିକର
ଦ୍ୱିଜବାଳାଙ୍କ ସ୍ନାନଘାଟ ସୁନ୍ଦର,

ସୁନ୍ଦରୀଗଣ ସାର ଅଙ୍ଗ ଧଉତ
ପୋଛୁଥିବେ ସୁନୀଳ କେଶଜମୂତ ।

ଏକାଳେ ପଡ଼ି ତୁମ୍ଭ ଦେହରୁ ଝଡ଼ି
ଶୀତ ଶିଶିରକଣ ରହିବ ଜଡ଼ି

ତାଙ୍କ କୁନ୍ତଳମାଳେ ହିମଜଳଦ
ହୋଇ ଶାରଦ ତାହା ପର ବଶଦ ।

ଅଦୂରେ ଚନ୍ଦ୍ରଚୂଡ଼ ମହାଦେବଙ୍କ
ମନ୍ଦିରଚୂଡ଼ା ଠେକ ନିଜ ମସ୍ତକ

ତୁମ୍ଭ ଆଗମନର ଅଭିନନ୍ଦନ
ଶୁଣାଇଦେବ ବିପ୍ର ବେଦବନ୍ଦନ ।

ଗନ୍ଧର୍ବ ପୁଷ୍ପଦନ୍ତ କଣ୍ଠକୁହର—
ଝରା ମହିମ୍ନସ୍ତବ ଅମୃତସ୍ୱର

ପ୍ରତିଧ୍ୱନିତ ହୋଇ ବିପ୍ରକଣ୍ଠରେ
ତୋଷିବ ମନଃପ୍ରାଣ ଅତି ଆଦରେ ।

ଯେବେ ଅନ୍ତର ମନେ ମୋ ନିବେଦନ
ସ୍ମରିବ ଯେଣେ ତହିଁ ତୁମ୍ଭ ଗମନ,

ଦେଖିବ ବାଣଦୁର୍ଗ ମହିଳାଗଣ
ମଣ୍ଡି ନିଜ କୁନ୍ତଳେ ନାନା ସୁମନ

କ୍ୱଣାଇ ଗୁରୁପଦେ ନୂପୁରରବ
ମୁଗ୍ଧ କରନ୍ତୁ ନବ-ଯୁବକ ସବ;

ବେଶ ପରିପାଟିରେ ମୁଖ-ମୁକୁର
ମାଜି ଲଲାଟେ ରଞ୍ଜି ସ୍ୱର୍ଣ୍ଣସିନ୍ଦୂର

ଭିଡ଼ି ନୀଳକାଞ୍ଚୁଲି ଉରଜ ପରେ
ଲମ୍ବାଇ ମୁକ୍ତାହାର ତହିଁ ସାଦରେ

ଶୁଭ୍ର ବସନେ ଢାଙ୍କି ତନୁ ଲାବଣ୍ୟ
ବରଚୁଥିବେ ନିଜ ଅଙ୍ଗକାନ୍ତନ ।

ପ୍ରକୋପଗ୍ରହମାନ ଯେବେ ସ୍ୱକରେ
ଗୁଣି ଶଙ୍କରନାମ ସ୍ୱଗତ ସ୍ୱରେ

ଦୃପ୍ତ ତରଳ ନୀଳ ନୟନାବଳୀ
ଦେଉଥିବେ ଶ୍ରୀକଣ୍ଠପଦେ ସେ ଢାଳି ।

ଧର୍ଷି ନ ଦେବ ବାପ୍ପ ! ହୋଇ ନିର୍ଦ୍ଦୟ
ତାଙ୍କ କୋମଳ ମୁଖ-କମଳଚୟ ।

ଏମନ୍ତ ସୌମ୍ୟଛବି ଧରିବ ଥରେ
ଯେବେ ମୋ ଅନୁରୋଧ ନିଜ ମନରେ ।

ଚୁମ୍ବି ଶିରପ୍ରଦେଶେ ହରଗୃହର
ପଶିବ ଭିତରକୁ ତହୁଁ ମାହାର,

ମଲ୍ଲିକାଗଣଙ୍କର ଶିବ-ଅର୍ଚ୍ଚନ
ଦେଖି ସଫଳ ହେବ ତୁମ୍ଭ ନୟନ ।

ଅନନ୍ତେ ନିଜ ଗାତ୍ର ଶିଶିରକଣ
ବରଷି ଲିଙ୍ଗେ ଷଧୂଚୂର୍ଣ୍ଣ ସମାନ

ନୀଳଗ୍ରୀବ ମାନସେ ସାଧୁ ପ୍ରସନ୍ନ
ଦେନବ ତୁମ୍ଭେ ତାଙ୍କ ଆଶୀର୍ବଚନ ।

ଅଗ୍ରେ ପୂର୍ବାଶାମୁଖେ ପ୍ରତ୍ତଗମନ
ଇଚ୍ଛି କରଲେ ଧୀରେ ମାର୍ଗବର୍ଦ୍ଧନ

ଦେଖିବ ବାଣଦୁର୍ଗଚ୍ଛବି ନୟନେ
ନଷ୍ଟେଁ ଜନ୍ମିବ ତୋଷ ତୁମ୍ଭର ମନେ ।

ମହୀ-ମଲ୍ଲିକାବକ୍ଷ-ପ୍ରବାଳ-ହାର —
ସମ ବକ୍ଷରେ ରାଜପଥ ତାହାର,

ଶୋଭଇ ବେନି ପାର୍ଶ୍ୱେ ଆମ୍ରକାନନ
ମାଣିକ୍ୟ ଯୁକ୍ତ ଯଥା ନୀଳ ରତନ ।

ମଧ୍ୟେ ମଧ୍ୟେ ରାଜଇ ରାଜ ସଉଧ,
ଯଥା ଶାରଦାମ୍ବରେ ଶ୍ୱେତ ଅମ୍ବୁଦ,

ପର୍ଣ୍ୟପୂରିତ ପଣ୍ୟଜୀବୀ ଆବାସ
ଦେଖାଇ ସ୍ୱବକ୍ଷରେ ପଣ୍ୟବିଳାସ

ହରଇ ବ୍ୟବହାର ମନକୁରଙ୍ଗ
ନେତ୍ରଚ୍ଛଟେକେ ବନ୍ଧ ଭାବ ସୁରଙ୍ଗ ।

ଅଦୂରେ ସେ ନଗଶ୍ରୀ-ସୀମନ୍ତ ପର
ଶୋଭେ ସିଂହାରଦେଇ ଗିରିସୁନ୍ଦରୀ,

ଦେଖି ତା ଭ୍ରମକାନ୍ତ ବିଶାଳ ଛବି
ପଡେ ବ୍ରାହ୍ମୀପ୍ରବାହ ନାଚଇ ଦ୍ରବି,

କରେ ମଧୁର ସ୍ୱରେ କଳ ସଙ୍ଗୀତ
ଘଣ୍ଟା ପଥର ବୀଣା କର ଧ୍ୱନିତ ।

ପୂର୍ଣ୍ଣସଲିଳା ବେନି ସ୍ୱଚ୍ଛ କାସାର
ଦୁର୍ଗ ପ୍ରବେଶଦ୍ୱାରେ ଦିଶେ ବିସ୍ତାର,

ମଣ୍ଡି ଫୁଲ୍ଲ ପଙ୍କଜମାଳାରେ ଗାତ୍ର
କମଳାକର ନାମ କରନ୍ତି ସାର୍ଥ ।

କମଳାନନା-ମୁଖକାନ୍ତି-କୋମଳ
ଅରସିକ ରଚନ୍ତି ପର ବିକଳ

ଶିଶିରରସ ସିକ୍ତ ନାଶ ତାଙ୍କର
ସାଧିବ ନାହିଁ କଦା ମନ୍ଦାରବର ।

ଅଗ୍ରେ ଦେଖିବ ପୁଷ୍ପୋଦ୍ୟାନମଣ୍ଡନ
ମହେନ୍ଦ୍ରାଳୟ ସମ ରାଜସଦନ,

କର୍ପୂରଧବଳ ପର ଶିର ବିସ୍ତାର
ଶତ୍ରୁ ହୃଦୟ ଦମ୍ଭ ଦିଏ ବିଦାରି,

ଉଡ଼େ ତା ଶିରେ ଶିଖିଚନ୍ଦ୍ର ପତାକା,
ଦେଖି ବିମୁଖ ମନ ହୁଏ ତାଠିକା ।

ତା ପୁର ପୁଷ୍ପବାଟୀ ନାନା ସୁମନେ
ପରିପୂରିତ ହୋଇ ନିନ୍ଦେ ନନ୍ଦନେ ।

ନବ ନବୀନାଗଣ ମୁଖ-ସାରସ
ହାସେ ପୂରାଇ କାଖେ ଧରି କଳସ

କଳମୁକୁଳା ପୁଷ୍ପବ୍ରତତି ପରେ
ସିଞ୍ଚୁଥିବେ ସଲିଲ ତହିଁ ଆଦରେ ।

ସେ ଉଦ୍ୟାନବକ୍ଷରେ ହେମନ୍ତ ଫୁଲ
ଦେଖାଇ ମଧୁରିସ୍ୟେ ହାସ୍ୟ ଅମୂଲ୍ୟ

ମୃଦୁ ପ୍ରଭାତବାତେ ଆଘାତ ପାଇ
ନାଚୁଥିବେ କୋମଳତନୁ ନମାଇ ।

ହର୍ମ୍ୟକାସାରେ ତହିଁ ପୁର ଅଙ୍ଗନା
ମନ୍ଦେ ବିହରୁଥିବେ ପଦ୍ମଲୋଚନା,

ଦେଖି ଭ୍ରମର ନବ ଶୁଭ୍ର ବିଳାସ
ବସ୍ତ୍ରେ ଢାଙ୍କିବେ ତନୁ ଲଭି ସନ୍ତ୍ରାସ ।

ଭ୍ରୂକମ୍ପନ ଗୃହଶୋଭନୀଙ୍କର
ଯଥା ବିଦ୍ୟୁତ୍କମ୍ପନ ମେଘ ଅଙ୍କର

ପ୍ରାସାଦ-ଘନକୂଳେ ଦେଖି ନୀହାର,
ନଚେଁ ସାର୍ଥକ ହେବ ଜନ୍ମ ଭ୍ରମର ।

ରାଜପ୍ରତିଷ୍ଠାନରେ ବିଦ୍ୟାପୀଠର
ଗତି ପର୍ଯ୍ୟବେକ୍ଷଣେ ତୁହିନବର,

ସ୍ଥିର କରବ ଗତ କିଛୁ ସମୟ,
ଦେଖିବ ସ୍ନେହମୁଖ ବାଳନଚୟ,
ନବ ଉତ୍କଳ-ଶିଶୁ ଆଦର୍ଶ ଧରି
ପ୍ରତିଭାପ୍ରଭାମୁଖେ ଯାଏ ନିଃସରି,

ଋତ ବାଣୀପଙ୍କଜପଦ ସେବନେ
ପ୍ରାଚୀନ ବ୍ରହ୍ମଚର୍ଯ୍ୟ-ବାଳ ସମାନେ,
ନୀହାର, ଭାଗ୍ୟେ ଅଜ ବାଣୀରାଜ୍ୟତ
ଶୁଭ ଆକାଂକ୍ଷା ହୃଦନ୍ତରେ ଯାଙ୍କର

କରନ୍ତୁ ବାଣୀସେବା ଏକାନ୍ତ ଚିତ୍ତେ
ଅଗ୍ରେଯ୍ୟଗଣ ଶିଶୁ ମଙ୍ଗଳ ହିତେ ।
ଯଦି ବିଧି କରନ୍ତୁ ସଫଳକାମ,
ବାଣୀବନ ହୋଇବ କି ମନୋରମ !

ଉତ୍ତରିବେ ଏ ରାଜ୍ୟ କେତେ ଦେବତା
ଧରି ବିଦ୍ୟା-ବିଜ୍ଞାନେ ନିତ୍ୟ ଏକତା ।
ବିଶ୍ରାମ ଅର୍ଥେ ଯଦି ଇଚ୍ଛା ଅଧିକ
ମନେ ଜନ୍ମିବ ତୁମ୍ଭ ନୀହାରଶିଖ,
ଶୁଭ୍ରସଲିଳା-ହଂସରାଜି ଜନକ-
ଶିରେ ରହିବ ଯାଇ ସେହି ଦିନକ !
କାନ୍ତକୁମାରୀଙ୍କର ବିହାରବନ (୧)
ହିମାଦ୍ରିତୂଳେ ଯଥା ଉମାସଦନ,

---

୧—ବଣାଇର ଅଧିଷ୍ଠାତ୍ରୀ ଦେବତା ।

ଦେଖି ନୀଳାଭ ଖଣ୍ଡାଧାରଶିଖରେ
ଶ୍ରମ ସଫଳ ହେବ ଭାବ ମନରେ ।

ଅଶୋକ ଚମ୍ପା ନାଗେଶ୍ୱର କାନନ
ଲତା-ପୁଷ୍ପ-ପଲ୍ଲବ-ସୁରସମ୍ପନ୍ନ

ଅଶ୍ରମଶୋଭା ରାଜସଉଧ ପରି
ପଥିକ ମନ ପ୍ରାଣ ନଅଇ ହରି ।

ଭ୍ରମନ୍ତି ମୃଗକୁଳ ମନ ଆନନ୍ଦେ
ହଂସାବଳୀପୁଳନେ ତେଜନ୍ତି ରବାଦେ ।

ଶୁଣି ହଂସାବଳୀର କଳ ନାଃସ୍ୱନ
କରନ୍ତି ପକ୍ଷୀଗଣ କଳ କୂଜନ ।

ଗଜେନ୍ଦ୍ରଗଣ ହୋଇ ନିଜ କରଣୀ
ମଦଘୂର୍ଣ୍ଣିତ ନେତ୍ରେ ଗିରିଧରଣୀ

ଭ୍ରମି ବୃଂହିତନାଦେ ପଥିକ ମନେ
ସଦା କରନ୍ତି ଜାତ ଭୟ କମ୍ପନେ ।

ଅନନ୍ତେ ଭାସ୍କରଙ୍କ ମୃଦୁ କିରଣ—
ଛଟା ଚୁମ୍ବିଲେ ଶିରଶିର କାନନ

ଗ୍ରହ୍ମ ପାଥେୟ୍ୟ ଗିରବାଳଙ୍କ କରୁ
ହେଳନ୍ତ ଖଣ୍ଡାଧାର ପ୍ରାତଃକାଳରୁ ।

ପଥେ ମିଳିବେ ତୁମ୍ଭ ମାହାକବର,
ନିଜ କରଣୀ ସଙ୍ଗେ କେତେ କୁଞ୍ଜର,

ଶରତ କ୍ରୀଡ଼ା କର୍ପାଣୀ ନିର୍ଝରେ
ସିଞ୍ଚୁଥିବେ ସଲିଲ ନିଜ ଦେହରେ ।

ବସିବ ଆସି ବୁଡ଼ା ଶଇଲ ପରେ
ପୂରଇ ନିଜ ଅଙ୍ଗ ଶୀତ ଶିଶିରେ,

ସିନ୍ଦୁରସନ୍ଧ୍ୟା-ଗଣ୍ଡର ମସ୍ତ୍ୟାଳଖେଳ
କ୍ଷଣେ ଦେଖିବ ତହିଁ ମରାଳ ମେଳ ।

ପଡ଼ିବ ତୁମ୍ଭ ନେତ୍ର ଏବା ସେକାଳେ
ସିନ୍ଦୂରି ଗିରିଶୃଙ୍ଗ ଉପରେ ତାଳେ ।

ଦେଖିବ ବନପ୍ରକୃତିର ମାଧୁରୀ,
ନୀଲେନ୍ଦ୍ରମଣିସମା ଛଟାଶ୍ରୀଭୂରୀ ।

ଅଦୂରେ ନଦୀତୀରେ କ୍ରୋଶ ଅନ୍ତରେ
ରାଜଇ ଶିବକ୍ଷେତ୍ର ବୃକ୍ଷ ଉତରେ ।

ଶିବପୂଜନ ଅର୍ଥେ ହୋଇ ସକାମା
ନିତ ମିଳନ୍ତି ତହିଁ କୃଷକବାମା ।

ବ୍ରାହ୍ମୀ ବାଳଶଯ୍ୟାରେ ନାକଟି ଘଣ୍ଟି
ବୁଡ଼ା ଶଇଲନାଶି ଅଛି ପ୍ରକଟି ।

ତା ଶିରେ ଶିଳାସନେ ସଦା ମାହାର
ବସନ୍ତି ବାସୁଦେବ ନୃସିଂହାକାର ।

ବନବାସିନୀ ବରବାଳାମାନଙ୍କ
ମନ ବେଦନା ସଦା କର ହରଙ୍କ

ଚକ୍ରରେ ପାପଚକ୍ର କରନ୍ତୁ ନାଶ
ହିରଣ୍ୟପର ହର ଲକ୍ଷ୍ମୀନିବାସ ।

କ୍ରୋଶ କ୍ରୋଶ ଅନ୍ତରେ ସ୍ରୋତସ୍ୱତୀର
ଅଛଇ ଯେତେ ଶିବଶକ୍ତିମନ୍ଦିର,

ନୀରବ ସେ ସମସ୍ତେ ପୁରାବୃତ୍ତାନ୍ତ
କେ କରିବ ନିର୍ଣ୍ଣୟ ନୀହାରନାଥ ?

କାଳପ୍ରଭାବେ ଆଜ ସେ ମୂଲ୍ୟବାନ
ରତ୍ନନିକର ହେୟ ତୁଚ୍ଛ ସମାନ.

ଯତ୍ନ ଅଭାବେ କାଳକୀଟ ନିଷ୍ଠୁର
କରେ କୃନ୍ତନ ସଦା ନିର୍ଦ୍ଦୟ କ୍ରୂର ।

ଥାଇ ନୟନ ସର୍ବ ହିନ୍ଦୁସନ୍ତାନ
ଚିତ୍ରପ୍ରତିମା ପରି ଦୃଷ୍ଟିବିହୀନ,

ପୂର୍ବପୁରୁଷଙ୍କର କୀରତିମାଳ
ନୟନେ ମଣୁଛନ୍ତି ଯଥା ଜଞ୍ଜାଳ ।

ଦେଖିଲେ ସେ ସୁନ୍ଦର କଳାକୁଶଳ
ତୁମ୍ଭ ଏ ଜଡ଼ନେତ୍ରେ ଜନ୍ମିବ ଜଳ,

କିନ୍ତୁ ଅଭାଗ୍ୟ ଆଜ ହୋଇ ମାନବ
ନାହିଁ ସେ ଚେତା ତାଙ୍କ ନୀହାରଧବ !

ନିମ୍ନେ ଦେଖିବ ହିମ, ଶବରୀ ଘାଟ
ସ୍ୱବକ୍ଷେ ବହି କେତେ ନୀରସ କାଷ୍ଠ

"ମୁଣ୍ଡିକାଠ" ବାଣିଜ୍ୟଲୀଳା ବିସ୍ତାର
କଟକେ ଘୋଷାଇଛି ନାମ ତାହାର ।

ଆମ୍ଭ ଦେଶର ମହାଜନ ସମସ୍ତ
ହେମନ୍ତକାଳେ ତହିଁ ହୋଇ ଏକତ୍ର

ପ୍ରଜାନୟନେ କରି ଧୂଳି ପତନ
ଅଳ୍ପ ମୂଲ୍ୟେ କରନ୍ତି କାଷ୍ଠ ଗ୍ରହଣ ।

ତେଣୁ ତେଣିକି ତୁମ୍ଭ ଗମନପଥ
ସହଜ ହେବ ମନେ ଭାବ ନିୟତ,

ଏ କାଠଭେଳା ଯେଉଁ ନଦୀରେ ଯିବ,
ସେ ତୁମ୍ଭ ଗମ୍ୟପଥ ବୋଲି ଚିହ୍ନିବ ।

ଭେଳାବାହାକ ଝିଙ୍ଗ ଦଳର ଗୀତ
ଶୁଣି ପ୍ରେରଣାମୟ ଗ୍ରାମ୍ୟ ସଙ୍ଗୀତ

ପଥଭ୍ରାନ୍ତ ତୁମ୍ଭର ନୋହିବ କେବେ,
ମୋ ବାକ୍ୟେ ସମାଦର କରିବ ଯେବେ ।

ଅଗ୍ର ଦେଶରେ ତୁମ୍ଭ ନୀହାରବର,
ଛୁଇଁ ଯା ନୀଳ ଚୂଳ ବ୍ୟୋମ ଉଦର

ସେ ଅଟେ ଗିରିବର-ସାର ଚୂଳିଆ
ସ୍ୱଚ୍ଛ ଗିରିନର୍ଝରବରମାଳୀୟା,

ପବିତ୍ର ଗଙ୍ଗବଂଶଜାତ ରାଜନ୍ୟ—
ବୃନ୍ଦ-ପରିପାଳିତ ରାଜ୍ୟରତନ

ଶିରଭୂଷଣ ସମ ଶିଖରବର
ଘନ କୁଞ୍ଜ କାନନ ବହୁ ସୁନ୍ଦର ।

କୁଞ୍ଜରାନନ୍ଦପ୍ରଦ ସେହି ଶିଖରୀ,
ଯହିଁ କ୍ରୀଡ଼ନ୍ତି ସୁଖେ ମୃଗ ଚମରୀ ।

ଶୋଭା ଦର୍ଶନେ ଯାର କବିବରେଣ୍ୟ,
ରାଧାନାଥ ବିବୁଧ-ବୃନ୍ଦ-ବନ୍ଦନ

ମହାଯାତ୍ରା କାବ୍ୟର ଅଙ୍ଗମଣ୍ଡନ
ସ୍ୱରୂପ କଲେ ତାକୁ ଶିରରଞ୍ଜନ ।

ସେ ଗିରିମାଳାଶୋଭା ଦେଖି ନୟନେ
ଗମ ଗନ୍ତବ୍ୟ ପଥେ ଆନନ୍ଦମନେ ।

ଉତ୍କଳ-ଉତ୍କଳିନୀ-ବାଃମଣ୍ଡାପତି
ଯା ମେଖଳପ୍ରଦେଶ ନିତ ମଣ୍ଡନ୍ତି ।

"ନଭଃକକ୍ଷୀ ଶତଘ୍ନୀ କର ଧ୍ୱନିତ
ମୃଗୟାକାଳେ ମୃଗେ କର ଚକିତ"

ଉତ୍କଳ-ବ୍ୟାସକବି ବୃନ୍ଦପ୍ରବର
ଫକୀର ସେନାପତି ମନୀଷିବର

ଲଭିଲେ ଯହିଁ ସରସ୍ୱତୀ ଉପାଧି
ସାରସ୍ୱତ ମହିମା ଯତନେ ସାଧି ।

ସେହି ପର୍ବତ ବଂଶ ଉଜ୍ଜ୍ୱଳକାନ୍ତି
ଯଶମାଳାରେ ଯେଉଁ ଦେଶ ଦଭ୍ରତ,

ପଣ୍ଡିତମଣ୍ଡଳୀଙ୍କ ହୃଦସରସୀ
ନାଚେ ଯା ଯଶଚନ୍ଦ୍ର-କର ପରଶି ।

ଏଣିକ ତୁମ୍ଭ ପଥ ତାଙ୍କ ରାଜ୍ୟରେ
ନିର୍ମିତ ଜାଣ ବ୍ରାହ୍ମୀ ନୀଳ ବକ୍ଷରେ ।

ଶୁଣି ସୁନ୍ଦର କଳ ଚକ୍ରବାକର
ସେ ପଥେ ହେମେଶ୍ୱର ଗମନ କର ।

ଉଭୟ ତୀର ତାର ବିଶାଳ ଶାଳ
କେନ୍ଦୁ ମହୁଲ ବଣ୍ଡିତକ ପିଆଳ
ଆମ୍ର ଜମ୍ବୁକାସନାର୍ଜୁନ ବକୁଳ
ବୃକ୍ଷାବଳରେ ଦିଶେ ଅତି ମଞ୍ଜୁଳ ।

ପୁଣ୍ୟ ପୁଳିନ ତାର ସୁନ୍ଦରମୟ,
ରାଜେ ଶ୍ୟାମାଭ ରବିକ୍ଷେତ୍ରନିଚୟ ।

ହେମନ୍ତ ନାନାବର୍ଣ୍ଣ ବନସୁମନ
ଦୋଳ ବୃକ୍ଷାଗ୍ରେ-କରେ ନେତ୍ର ରଞ୍ଜନ ।

ଅଦୂରେ ନୀଳକାନ୍ତ ଗିରିକନ୍ଦର,
ତଳେ ଶୋଭଇ ଶାଳକ୍ଷେତ୍ର ସୁନ୍ଦର ।

ହେମନ୍ତକ ସମ୍ପଦେ ହୋଇ ମଣ୍ଡିତ
କରେ ପାନ୍ଥଜନଙ୍କ ଚିତ୍ତ ଚକିତ ।

କନକବର୍ଣ୍ଣ ରମ୍ୟ ସର୍ଷପସୂନ
ବିଶଦା ବ୍ରାହ୍ମୀତଟରେ ହୋଇ ପ୍ରପୂର୍ଣ୍ଣ

କରେ ପଲ୍ଲୀବାସିଙ୍କ ମନ ଆନନ୍ଦ
ବିତର ନବୀଣରେ ଶୋଭିସମ୍ପଦ ।

ଦର୍ଶନ ମାତ୍ରେ ପାନ୍ଥ ନୟନ ମନ
ହରେ ଅତ ସତୁର ସ୍ତୋଫ ସୁମନ । ※

ତୋଳ ଯତନେ ଗ୍ରାମ୍ୟ କୁମାରୀଗଣ
କରନ୍ତ ତା ସୁମନେ କେଶ ମଣ୍ଡନ ।

ଭୃଙ୍ଗ ଗମ୍ୟ ପଥର ବାତ କୋଣରେ
ସିନ୍ଦୂରସ୍ତୃ ଚୂଳଅ ଗିର ମଧ୍ୟରେ

ଦଶଇ ଯେଉଁ ଗିର ଶିର ଶୋଭନ
ବସୁସୀ ନାରୀ ନମ୍ର ସ୍ତନ ସମାନ ।

ବଣାଇ ବାମଣ୍ଡାର ସୀମାପର୍ବତ
ତାଙ୍କୁ ମାନସେ ବନ୍ଦୁ, ଯେନ ସତତ ।

ଗିରକନ୍ଦର ମଧ୍ୟେ ବେନ ସ୍ୱକ୍ୟର
ଦେଖ କାନନଶୋଭା କ ମନୋହର ।

ନବ ପଲ୍ଲବଶୀର୍ଷ ସ୍ୱଚ୍ଛବରନା
ବହେ କଲ ନନାଦେ କେତେ ଝରଣା ।

କାଚ ନିର୍ମଳ ନୀଳ-ନୀର ତାଙ୍କର
ଅମୃତୁ ବଳ ଅତ ସୁମିଷ୍ଟକର ।

---

※ ଥୋପା ବା ଗେଣ୍ଡୁଫୁଲ ।

ସେ ଗିରିମାଳ ଘନ କୁଞ୍ଜ ଅନ୍ତରେ
କାଉଚ ଲତାମୟ ବନପ୍ରାନ୍ତରେ
ବେଣ୍ଟକାରବାମାଙ୍କ ଆନନ୍ଦ ଧ୍ୱନି-
ପୂର୍ଣ୍ଣ ଗୀତଝଙ୍କାର ଉଠଇ ପୁଣି ।
ମାଦ୍ରାଗଶ୍ରେଷ୍ଠ ସେହି ଶୃଙ୍ଗୀ-ସକଳ
ବହି ସ୍ୱକ୍ଷ୍ମ ବକ୍ଷେ ଅତ ସ୍ଥଳ
ସୁଉଚ୍ଚାବଳୀ ନତବୃକ୍ଷ ଅଗଣିତ
ସ୍ଥାପିଛି ପ୍ରାକୃତିକ କଳା ସ୍ଥାପତ୍ୟ । (୧)
ଈଶାନକୋଣବ୍ୟାପୀ ପର୍ବତମାନ
ଠେକିଅଛନ୍ତି ଯେଉଁ ଶିଖରମାନ,
ସେ ସର୍ବଗିରି ଗିରିବରଧାରିଣୀ
ବଣାଇଁ ନଗଶ୍ରୀର ଅଳକାବେଣୀ ।
ଯା କନ୍ଦରନିଃସୃତ ଝର ସଲିଳ
କରନ୍ତି କରଗ୍ରିଜ ନାଚ୍ୟ ପଙ୍କିଳ ।
ତା ଚୂଳ ମେଖଳରେ ରଚ ବସତ
ଆଦମ ଭୂୟାଁ ଜାତି ଦଳ ଦରନ୍ତି ।

---

(୧) ଉପରୋକ୍ତ ଦୃଶ୍ୟାବଳୀ ବାମଣ୍ଡା ବଣାଇର ସଦର-ମାର୍ଗସ୍ଥ ଅମୃଗାଁରୁ ଦ୍ରଷ୍ଟବ୍ୟ ।

ଯେଉଁ ଭୂୟାଁ-ବାଳାଙ୍କ ଛଙ୍ଗୁ ସଙ୍ଗୀତ
ରସାନନ୍ଦ ଛନ୍ଦଙ୍କ ଗୀତେ ମଣ୍ଡିତ (୧)

ହୋଇ, ତୋଷ କରଇ ପାନ୍ଥଜନର
ଚିର ବିଷାଦଯୁତ ହୃଦ ଭିତର ।

ପଲ୍ଲିବାସିନୀ ସେହି ବାଳିକାଗଣ
ବଲ୍ଲୀ ମଧ୍ୟରେ କରି ପଦଛରଣ

ହଲ୍ଲୀସକ ପ୍ରମୋଦ ଆନନ୍ଦ ମନେ
ବିହରନ୍ତି ଯେ କାଳେ ଯୁବା ଗହଣେ

ପାପରହିତ ସେହି ବାଳାଙ୍କ ଚିତ୍ତ
ନିରେଖି ନ ହୋଇବ କିଏ ମୋହିତ !

ତଦନ୍ତେ ଦୟା ବହି ନୀହାରବର,
ଅଗ୍ରେ କରିବ ତୁମ୍ଭ ଗତି ପ୍ରଖର,

ଦେଖିଲେ ତୁମ୍ଭ ନେତ୍ର ପଡ଼ିବ ଭୁଲି
ବାର-କୋଠି ଭୂଷଣାଚଳ ପାଙ୍ଗୁଳି ।

ଦୈତ୍ୟସମରଶ୍ରାନ୍ତ ଇନ୍ଦ୍ରବାହନ
ମନ୍ଦାକିନୀପୁଳିନେ ମନ୍ଦ ଗମନ

ରଚିଲା ସମ ଗିରି ନୁଆଁଇ ଶିର
ଶୁଣେ କଲ ନିସ୍ୱନ ବ୍ରାହ୍ମୀ ନଦୀର ।

---

(୧) କବି ରସାନନ୍ଦଙ୍କର ମଧୁର କବିତାସବୁ ଏହି ଅନାର୍ଯ୍ୟ ଜାତି-ମାନଙ୍କର କଣ୍ଠସଙ୍ଗୀତ ।

ଦେଖିବ କେନ୍ଦୂଘାଟ ପାଶେ ମାନ୍ଧାର,
ଦେଖି ତୁମ୍ଭର ଶଙ୍ଖଶୁଭ୍ର ବହାର
କେତେ ବନଭଲ୍ଲୂକ ଶିତ ସଲିଲ
ପିଇ ଅସିବେ ଜବେ ପାଙ୍ଗୁଳି ବଳ ।

ଅଦୂରେ ଚେନ୍ତୁଳଆ ଗଣ୍ଡ ମଧରେ
ଚକ୍ରବାକମିଥୁନ ଆନନ୍ଦଭରେ
ମଧୁର ସ୍ୱରେ ତୁମ୍ଭ ବନ୍ଦନ୍ୟ ଗୀତ
ଗାଇବେ ତୁମ୍ଭ ଅଗ୍ରେ ପ୍ରେମ ସଙ୍ଗୀତ ।

ଏକାଳେ ସେହି ଗଣ୍ଡ ସ୍ୱଚ୍ଛ ସଲିଲ
ଉଦ୍ଭେଦୀ ସମୀରଣ ଗତି ସଲୀଳ
ରଚିବ ତୁମ୍ଭ ସଙ୍ଗେ ଧୀର ମନ୍ତ୍ରରେ
ଦୋଳାଇ ସହକାରକୁଞ୍ଜକୂଳରେ ।

ବାମଣ୍ଡା ନରେଶଙ୍କ ବସ୍ତୁତ ରାଜ୍ୟେ
"ମଣ୍ଡଳ ଏକ" ବାରକୋଠ ବର୍ତ୍ତେ ।
ତଦ୍ଦଧ ରାଜପ୍ରତିଷ୍ଠାନ ସଉଧ
ଶୋଭେ ଅମ୍ବୁଦ ସମ ଶିଖିରମୂଦ !

ନୀଳସଲିଳା ବାହ୍ମୀ ଚକ୍ରବାକନୀ
ଅନ୍ତରେ ଯା ମାଧୁରୀ ଶବ୍ଦାରେ ଯେନ
ନାଚେ ଉପଲାସନେ ଦେଇ ଉଲ୍ଲମ୍ଫ
ଜନ୍ମାଇ ନନ୍ଦ ବକ୍ଷେ ଶତ ପ୍ରକମ୍ପ ।

ପ୍ରକୃତ ଶୋଭାରାଶି ଅବଲୋକନେ
ତୃପ୍ତି ସହରେ ଯହିଁ ଉତ୍ସୁକ ମନେ ।
ଶ୍ୱାପଦବିନାଶିନୀ ସାଧନାଶ୍ରିନୀ
ଶତ୍ରୁଦମ୍ଭ-ଆରମ୍ଭ-ଚତୁର୍ଧ୍ୱଂସିନୀ
ଜଗଦ୍‌ବ୍ୟାପିନୀ ରମ୍ୟା ଦେବୀ ତ୍ରିଶୂଳ
ଛେଦେ ସେଠାରେ ସର୍ବ ଶ୍ୱାପଦମୂଳ ।
ଧବଳ ଚୂଳ ଧର୍ମାଳୟ ଉପରେ
ବସି ଗୃହିଁଲେ ବନ୍ଧୁ ! ଦଗ ଉତ୍ତରେ
ଦେଖିବ ସେହି ଉଚ୍ଚ ଚକ୍ରଳଥ ଶିର,
ଗଡ଼ଜାତରେ ସେ କି ଗିରି ମନ୍ଦର ?
ପ୍ରଧାନ ପ୍ରପାତର ଗିରିମାଳିକା
ଗିରିରାଜର ଯଥା କୁଳପାଳିକା
ଆଉଜି ସ୍ୱାମୀ ବକ୍ଷେ ଭରିବା ପରି
ରହିଛି ବେଦଦୁର୍ଗଯାଏ ଅବୋରି ।
ଯାର ମେଖଳା ବନ କୁଞ୍ଜ କାନନେ
ମୃଗ ଉଦ୍ଦେଶ୍ୟ ମଧୂକାଳାଗମନେ
ବାମଣ୍ଡାଧୀଶ ବୀର-କୁମାରଗଣ
କରନ୍ତି ନିତ ନିତ ଆସି ଭ୍ରମଣ ।
ଯେବେ ମୋ ଅନୁରୋଧ ନୀହାରବର,
ଦେଖିବ ଯେବେ ଶୋଭା ନେଇ ବାହାର

ପାନ୍ଥନିବାସ ପରେ ବାରକୋଠର
ଗଚ୍ଛ ସ୍ମରି କରିବ କ୍ଷଣେ ଭ୍ରମର ।

ମନସ୍ୱୀ ବାସୁଦେବ ପ୍ରିୟ ନନ୍ଦନ
କଳାବିଦ୍ୟାପ୍ରବୀଣ ଗଙ୍ଗାଧର

ସଚ୍ଚିଦାନନ୍ଦଙ୍କର ରୁଚ ସ୍ମୃତି
ଦେଖିଲେ ତୁମ୍ଭ ହୃଦ ଉଠିବ ପୂରି ।

ଅନନ୍ତେ ପ୍ରାଚୀ ଦଗେ ତୁମ୍ଭ ନୟନ
ଭିଗେୟ ହୋଇଲେ ମିତ୍ର, ଥରେ ପତନ,

ବୁଝିବ ତୁମ୍ଭ ଜ୍ଞାନ ମହା ଅନନ୍ତ—
ଶୋଭି ଅମ୍ବୁଧି ମଧ୍ୟେ ହୋଇ ଚକିତ ।

ଉତ୍କଳ ହିମାଳୟ ସେ ମାଳ୍ୟଗିରି
ପାଳପାଳିତ ରାଜ୍ୟ ଅମୂଲ୍ୟ ଶିରି ।

ନୀଳ ଆଷାଢ଼ୀ ମେଘ ସମ ଚୂଳକୁ
ଟେକି ରହିଛି ମହାବ୍ୟୋମ ତଳକୁ ।

ଭେଦିବା ପରି ଜ୍ଞାନଜ୍ଞାନପ୍ରଭାବ
କମାନ୍ଦ୍ୱଯେ ପରଶି ପାଣ୍ଡିତ୍ୟବିଭ

କମ ପର୍ଯ୍ୟାୟେ ଚିରଶୃଙ୍ଗସକଳ
ଉନ୍ନତି ଛୁଇଁ ଅଛି ନଭୋମଣ୍ଡଳ ।

ପ୍ରତିଭାବନ୍ତ ବାଣୀ-ପ୍ରିୟ କୁମର
ରାଧାନାଥ କବୀନ୍ଦ୍ରକୁଳ-ଭାସ୍କର

ସ୍ୱାସ୍ଥ୍ୟଲାଭ ଅଶାରେ କିଛି ସମୟ
କରିଥିଲେ ସେ ଗିରି ବନେ ଆଶ୍ରୟ ।

ଦେଖି ଗିରି ସୁନ୍ଦର, ସୁନ୍ଦରତର
ମୁଗ୍ଧ ହେବାରୁ ତାଙ୍କ ଉଚ୍ଚ ଅନ୍ତର,
ଯୋଗୀନ୍ଦ୍ର ପାତଞ୍ଜଳ କପିଳ ପରି
ସୂତ୍ର ରଚିଲେ ମୁନିବୃତ୍ତି ଆଚରି ।

ଅଦ୍ୟାପି ତାଙ୍କ ସୂକ୍ଷ୍ମ ସୂକ୍ଷ୍ମ ଅକାରେ
ସଞ୍ଚିତ ତାଙ୍କ ଗ୍ରନ୍ଥେ ଛପା ଖାତାରେ ।

ତା ଭାବ ବିଶ୍ଳେଷଣେ ସମର୍ଥ ଜନ
ଅଛି ଏ ଉତ୍କଳରେ ଅନ୍ୟ କେ ଯେନ !

ସେ ସତ୍ତ୍ୱପ୍ରଭ ମନ ଅଛି କାହାର
ତାଙ୍କ ସୂତ୍ରେ କରିବ ଭାଷ୍ୟ ପ୍ରଚାର !

ଦେବେ କି ବାକ୍ୟଦେବୀ ଏମନ୍ତ ଜଣେ
ଅଧଃପତିତ ଆଜ ଉତ୍କଳ ପ୍ରାଣେ !

ଅଧୁନା ତୁମ୍ଭେ ଥିବା ସ୍ଥାନୁ ନୀହାର,
ଅଟେ ନିକଟ ଦେବଦୁର୍ଗ ବିସ୍ତାର ।

ଯେବେ ମୋ ଅନୁରୋଧ ଉତ୍ତମ ମନେ
ପଦାର୍ପଣ କରିବ ତହିଁ ଯତନେ ।

ଅବଶ୍ୟ ସେହି ପଥ ବଙ୍କ ହୋଇବ,
ମନୋମୋହନ ଦୃଶ୍ୟ କିନ୍ତୁ ଦେଖିବ ।

ବାମଣ୍ଡା ରାଜବଂଶ-କମଳବନ
ଉଦ୍ଦୀପନକାରକ ବାଳ ତପନ
ସାର ବାସୁଦେବଙ୍କ ଧବଳ କୀର୍ତ୍ତି
ଥୋଇଛୁ ସେ ଦୁର୍ଗରେ ଅମର ପ୍ରୀତ ।

ହନେ ସେ ରାଜଦୁର୍ଗ ହମ-ରାଜନ
ଯେନ ସ୍ୱବକ୍ଷେ ସଦା ଧାଧୂ ସଜ୍ଜନ
ଧର୍ମମଣ୍ଡଳେ ଯଶ ଖ୍ୟାତ ତାହାର
କରଥିଲ୍ଲ ପଣ୍ଡିତମୁଖେ ପ୍ରଚ୍ଚର—
"ସ୍ୱର୍ଗ ଉତ୍ତର ଶୁଭ୍ର ହମାଳୟକୁ
ସ୍ୱର୍ଣ୍ଣ ମନ୍ଦାକିନୀପଦ୍ମମାଳକୁ
ଶତ ଯାଜ୍ଞିକ ଶଚୀପ୍ରିୟବାନ୍ଧବ
ଗଲେ ଲମ୍ଭାଇଗଲ୍ଲ ପର ବାସବ"

ଉଦାରଗୁଣପୂର୍ଣ୍ଣ, ଗୁଣିତଳକ
ଶ୍ରୀ ବାସୁଦେବ ନରାଧିପ ନାୟକ
ସୁଯଶ ପଦ୍ମମାଳା ରାଜଲକ୍ଷ୍ମୀର
କରୁ ସାଦରେ ଯେନ ସେ ମହାଧୀର
ମଣ୍ଡିଲେ ମୁନିଜନବାଞ୍ଛିତ ପଦ
ପରଲୋକର ଯାହା ସାର ସଂପଦ ।

ଦେଖିବ ଯେବେ ମିବ ସେହି ନୃପର
ହମଲ ହୃଦେ ଜବେ ଗମନ କର

ଏଥୁଁ ବାରୁଣୀ ଦଶେ ଏକ ଯୋଜନ,
ହେବ ମନନଯୃନବାଦଭଞ୍ଜନ ।

ଦେଖିବ ସେ ବିମଳ ଗିରିକୂଟରେ
ରମଣୀୟ ମନ୍ଦର ଉଟଜବରେ,

ଶ୍ୟାମଳ ତାମରସ ବିମଳଚ୍ଛବି
କାକୁସ୍ଥ-ପଦ୍ମବନବିଳାସୀ ରବି

ସୀତାସୀତାବ୍ଜମୁଖଚୁମ୍ବୀ ଭ୍ରମର
ଅରଣ୍ୟପ୍ରିୟ ରାମ କାମସୁନ୍ଦର

ଯେନ ସ୍ୱସଙ୍ଗେ ସୀତା ସୁମିତ୍ରାସୁତ
କରନ୍ତି ସେ କାନନପ୍ରଦେଶ ପୂତ ।

ନାଶିକକୂଳେ ପଞ୍ଚବଟୀ କାନନେ
ଯଥା ଭ୍ରମିଲେ ରାମ ମୁନିବଚନେ,

ମନସ୍ୱୀ ବାସୁଦେବ ପ୍ରୀତ ଅହ୍ୱାନ
ତଥା କରନ୍ତି ତାଙ୍କୁ ଏଥି ସ୍ଥାପନ ।

ତା ପାଶେ ଗିରିପଦେ ବନ ପରଶି
ରାଜଇ ଗୋଦାବରୀ ମହାସରସୀ,

ଯଥା ବନବାଳାର ସ୍ୱଚ୍ଛ ଦର୍ପଣ
ବିମଳ ଛଟା ତାର ତଥା ପ୍ରସନ୍ନ

ପ୍ରତୀଚୀପଟେ ତାର ଅତି ସୁନ୍ଦର
ବିଭାତ କଳାକର ବିଶାଳ ସର, .

ଝଲସନ୍ତ ତା ବକ୍ଷେ ହଂସମିଥୁନ
କରନ୍ତ ସାରସାଳୀ ମଧୁର ସ୍ୱନ,
ମୀରସନ୍ଧ୍ୟାବେ ତାର ଗ୍ରାମବାସିନୀ
କୃଷକକୁଳବାଳା ମୃଦୁହାସିନୀ
କର ଅଙ୍ଗମାର୍ଜନ ପ୍ରଭାତକାଳେ
ପୂଜନ୍ତ ଶ୍ୟାମପଦ ନୀଳ କମଳେ ।
ତଦଗ୍ରେ ଭୁବନେଶ ! ପଦ ପତନ
କଲେ, ପ୍ରୀତିର୍ଗୀପଟେ ନୋହୁ ବମନ
ଦେଖିବ କାଳୀକୋଠ (୧) ଖମାର ଛବି
ଖ୍ୟାତ କମଳାକୁଞ୍ଜେ ବିଶ୍ରାମ ଲଭି,
ବୁଦ୍ଧିମାନ କୁମାର ସ୍ୱବୁଦ୍ଧିବଳେ
ବାନ୍ଧି କଙ୍କଡ଼ାଖାଇ-ଝର କୌଶଳେ
ତା ସାତବାହାି ଜଳ କରି ଗ୍ରହଣ
ସୁଖେ କରନ୍ତ ଶସ୍ୟକ୍ଷେତ୍ରେ ସିଞ୍ଚନ ।
କେଦାର ବାରିପୂର୍ଣ୍ଣ 'ହୁଡ଼େ' ରଞ୍ଜିତ
ସୁଦୂର ପ୍ରାନ୍ତ ଯାଏ ପ୍ରଶସ୍ତାୟିତ,
'କମଳା' କ୍ଷେତ୍ର ତହିଁ କ ଶୋଭାନ୍ୱିତ
ଦେଖିଲେ ହେବୁ ହୃଦ ! ତୁ ଆନନ୍ଦିତ ।

---

(୧) ଏହି ଖମାରଟି ରାଜା ସାର୍ ବାସୁଦେବ ସୁଢ଼ଳ ଦେବଙ୍କ ପୁତ୍ର ମ୍ଭାଲ ଜୟନାରାୟଣ ଦେବଙ୍କଦ୍ୱାରା ନିର୍ମିତ ।

ବଜ୍ଞାନପ୍ରକ୍ରିୟାରେ କେଦାରଶ୍ରେଣୀ
ଶୋଭନ୍ତ ସମତଳ 'ଲେଭଲ୍' (*) ଯେହ୍ନ ।

ବାଲୁଙ୍ଗାଙ୍କର ଅଧଯଣ କାଢରେ
ଅପସର ଅଛନ୍ତି ଭସ୍ମ ଅନ୍ତରେ ।

ଖମାର ଚଉଷ୍ପାର୍ଶ୍ୱେ ମାର୍ଜିନକର
କଙ୍କରମୟ ପୁଣି ରୁଚିରତର ।

ରସ-ରସାଲଯୁକ୍ତ ସେ ଉପବନ
ଧର ନବ ମୁକୁଳ ସଦା ପ୍ରସନ୍ନ ।

କାଲକାଠ ଚୂଡ଼ାରେ କୁମାରଙ୍କର
ଉଦ୍ୟାନ ପ୍ରଶୋଭନ୍ତ ସୌଧଶିଖର

ନରେଖି ତୁମ୍ଭ ମନ ବିଷାଦ-କାଳ
ପୋଛିବ ନଶ୍ଚେ ହର୍ଷ-ସଲିଳ ଢାଳ ।

ତା ଉପତ୍ୟକା ଦେଶେ ଅତି ସୁନ୍ଦର
ସ୍ୱଚ୍ଛେ ଅସ୍ୱାମବତ୍ତ ନିର୍ମଳ ସର,

କ୍ରୀଡ଼ନ୍ତି ରଜତାଭ ଶୃଙ୍ଗ ମୀନାଳୀ
ନୀଳ ସଲିଳେ ରକ୍ତ ପକ୍ଷକୁ ଶୃଙ୍ଗ ।

ପ୍ରକାଣ୍ଡ ସରତୀର ନାନା ସୁମନ-
ମାଳାରେ ନିଜ ଶୋଭା କରେ ବର୍ଦ୍ଧନ ।

---

(*) ଲେଭଲ (Levell)—ଯନ୍ତ୍ରବିଶେଷ ।

ସେ ସରେ ବିହରନ୍ତି କେତେ ଯୁବତୀ,
ନୀଳ ତମାଳେ ଯେହ୍ନେ ସ୍ୱର୍ଣ୍ଣବ୍ରତତୀ ।

ମଲ୍ଲୀହାସିନୀ ଭ୍ରୂରୁବଲ୍ଲୀଶୋଭନୀ
ଲଲନାଗଣ ହୋଇ ପୁଷ୍ପଧାରିଣୀ

ସ୍ନିଗ୍ଧ ନୀଲ କୁଞ୍ଚିତ କବରୀଭାର
ପୁଷ୍ପେ ସାଜି ମୋହନ୍ତି ମନ ଯୁବାର ।

ଅପାଙ୍ଗେ ମଦନାସ୍ତ୍ର କରି ଧାରଣ
ହୁଳହୁଳିନାଦେ କରି ପଦଗ୍ଚରଣ

ଶ୍ୟାମାଙ୍ଗୀଗଣ ଚିରକୁଞ୍ଜବନରେ
ନୃତ୍ୟନ୍ତି ହଲ୍ଲୀସକେ ମହାନନ୍ଦରେ ।

ଲଭନ୍ତି ସୁପ୍ରାଶସ୍ତ୍ୟ ସେହି ଖମାର
ମୃଗୟା ବିନୋଦନ ଅର୍ଥେ ନୀହାର,

ନିତ୍ୟ ବନ୍ଧୁକ କରେ କୁମାରଗଣ
ତହିଁ କରନ୍ତି ଆସି ବନଭ୍ରମଣ,

କେତେ ନବ ବୈଧବ୍ୟଦୀକ୍ଷାଧାରିଣୀ
ତହିଁ ଦେଖିବ ହାୟ ! ରୁକ୍ଷ ରମଣୀ

ଆଶ୍ରି ନଉତ ଗିରିନଳସ୍ଥମାନ
କରୁଥିବେ ଶୋକାଶ୍ରୁଜଳ ମୁଞ୍ଚନ ।

ନମି ଭକ୍ତିମୋଦେ ବିଶୁଦ୍ଧ ମନେ
ସେ ଗ୍ରାମେ ଗ୍ରାମଦେବୀ ପଦ୍ମଚରଣେ (୧)

---

(୧) କାଲକାଠ ଖମାରର ଅଧିଷ୍ଠାତ୍ରୀ ଦେବୀ ଶିକୂଳୀସ୍ନା ପାଠ ।

ଲଭ ତାଙ୍କର ଶୁଭ ଅଶୀର୍ବଚନ
ଅଗ୍ରେ କରିବ ମିତ୍ର, ପଦବର୍ଦ୍ଧନ ।

ଅତ ନିକଟେ ଶାଳକ୍ଷେତ୍ର ବିସ୍ତାର-
ବନ୍ତ, ରାଜଇ କଳାମାଣ୍ଠି ଖମାର । (୨)

ପୁଷ୍ପ ଉଦ୍ୟାନେ ତାର କଳା ଲଳିତ
ଦେଖିଲେ ହେବ ତୁମ୍ଭେ ବୁଦ୍ଧିରହିତ ।

ଯା ଖମାରବାଟିକା ଅନ୍ତରେ ବସି
ବିବିଧ ଶସ୍ୟବୀଜ କରେ ପରଶି

ବିଜ୍ଞାନମତେ କୃଷି ଶ୍ରେୟ ଚିନ୍ତନ
କରନ୍ତି ବାସୁଦେବ ପ୍ରିୟ ନନ୍ଦନ ।

ଅତି ସଜ୍ଜନ ସେ ତ ବନ୍ଧୁବତ୍ସଳ,
ଯାଙ୍କ ହୃଦୟ ନବନୀରୁଁ କୋମଳ,

ଲଭିଲେ ତାଙ୍କ ସଙ୍ଗେ ଦନେ ମାତର
ହୃଦ ବିକଚ ତହିଁ ତୁହିନଧର ।

ଅଗ୍ରେ ପଦବର୍ଦ୍ଧନ ହେଲେ ତୁମ୍ଭର
ପ୍ରଧାନ ପ୍ରପାତର ଜଳଶୀକର

ପରଶି ତୁମ୍ଭ ହୃଦ ହେବ ବିଶଦ
ସମୂଳେ ନାଶି ମନ୍ଦ ଶ୍ରମବିପଦ ।

(୨) ଏହି ଖମାରଟି ସାର୍ ବାସୁଦେବ ସୁଢ଼ଳ ଦେବଙ୍କ ୨ୟ ପୁତ୍ର ଶ୍ରୀଲ୍ ଲଳିତମୋହନ ଦେବଙ୍କଦ୍ୱାରା ନିର୍ମିତ ।

ବସିବ କ୍ଷଣେ ମନେ ହୋଇ ହରଷ
ବସନ୍ତନିବାସର କୂଳେ ଉଭସ ।

ଗାଇବ ମିତ୍ର ତହିଁ ହୋଇ ବିଭୋର
ସଚ୍ଚିଦାନନ୍ଦମୟ ଗୀତନିକର ।

ଦେଖିଲେ ପ୍ରପାତର ଉଚ୍ଛ୍ୱାସଗଛ
ଶ୍ରମଯାତନା ତୁମ୍ଭ ଅଙ୍ଗୁ ଝୁଣ୍ଟିତ

ଝୁଣ୍ଡ ବଲୀନ ହେବ ପ୍ରପାତଜଳେ
ମଧୁର ମଧୁମୟ ମନ୍ଦ ଅନିଳେ ।

ଯହିଁ ଦେବଦୁର୍ଗର ନବୀନାଗଣ
କରନ୍ତି ଆସି ପ୍ରାତଃକାଳ ଭ୍ରମଣ

ସୂକ୍ଷ୍ମ ଶୁଭ୍ର ବସନେ ତନୁ ଲାବଣ୍ୟ
ଅତି ଯତନଭାବେ କରି ଗୋପନ ।

ସେ ଗିରିକୁଞ୍ଜବନେ ମହିଳାଗଣ
ଲଳିତ ସୁକୋମଳ ଗାତ୍ରମୋଳନ—

ଭଙ୍ଗୀରେ କଙ୍କରତ ଗିରିକନ୍ଦର
ମଣ୍ଡିବାବେଳେ କାମ ରତି ସୁନ୍ଦର

କ୍ରୀଡ଼େ ମହିଳାଗଣ ଭ୍ରୂଲତା ମଧେ
ବଣ୍ଡବଜୟବାନା ଧରି ସମଦେ ।

ଗୃହିଁ ଚମ୍ପକପୂର୍ଣ୍ଣ ଗିରିକାନନ
ଭାଷନ୍ତେ ଯୋଷାଗଣ ଶ୍ଳେଷ ବଚନ

ମୂକ ଭଜଇ ପିକ ଗିରିବକ୍ଷରେ
ଆଶ୍ରି ନିବିଡ଼ କୁଞ୍ଜଲତା ଅନ୍ତରେ ।

ଗିରି ଉପତ୍ୟକାରେ ନୀହାରବର
ଦେଖିଲେ ଅପରୂପ ଦେବଦୁର୍ଗର

ଚକିତ ହେବ ତୁମ୍ଭ ହୃଦକମଳ
ଯଥା ବାତବିହୀନ ସରସୀଜଳ ।

ତ୍ରିକୂଟାଚଳ ଶିରେ ଲଙ୍କାଭବନ
ପ୍ରତ୍ୟକ୍ଷି ଯଥା ବୀର ବାତନନ୍ଦନ

କ୍ଷଣମାତ୍ରକେ ଚିତ୍ତେ ଲଭି ଚକିତ
ତା ମୋହନଛଟାରେ ହେଲେ ମୋହିତ,

ତଥା ଏ ମହାଦୁର୍ଗ ନୀହାରପତି,
ଦେଖନ ବିମାନନଭ ସଭିଧପନ୍ତ

ପାଣ୍ଡୁରକାନ୍ତ ମହା-ବାରିଦ ସମ
ଦିଶେ ଲୋକନୟନେ ସୁମନୋରମ ।

ବିସ୍ତାର ରାଜପଥେ ପଣ୍ୟବଜାର
ମନୋରଞ୍ଜକ ହୋଇଅଛି ଯାହାର,

ଅତି ପ୍ରଭାତୁଁ ଯଦି ତୁମ୍ଭେ ତହିଁରେ
ପ୍ରବେଶ ହେବ ହିମଧର ସଧୀରେ,

ଦେଖିବ ମହାମନା ବଙ୍କଶେଖର
ରାଜା ସଚ୍ଚିଦାନନ୍ଦ ଯଶକର

ଉଜ୍ଜ୍ୱଳ ବ୍ୟୋମାଙ୍ଗନ ତାରକା ପରି
ଉସ୍ତାରେ ଶାଳସ୍ତମ୍ଭେ ଜ୍ୟୋତିଲଦଶି ।
ଯାହାଙ୍କ ଅପ୍ରତିମ ବୃକ୍ଷଶ୍ରୁଶି
ଜଳ ଉଦ୍ଧୃତ ବେଣ ବଳକୁ ଧରି
ଦେବେନ୍ଦ୍ରାନୁକରଣେ ଜନ ପ୍ରତିଷ୍ଠା
ନରେ ସ୍ଥାପିଛନ୍ତି ଧାମ୍ଭି ଏକାନ୍ତ ନିଷ୍ଠା ।
ଯେ ମନ୍ଦ ଭୁଜଙ୍ଗର ସଙ୍ଗ ପରଶି
ଅଛି ଏକାନ୍ତ ଗୃହେ ବାମଣ୍ଡାବାସୀ
ରସିକବୃନ୍ଦ ସୌଦାମିନୀହାସିନୀ
ଯେବେ ସ୍ୱଅଙ୍କେ ବାଳା ପିକଭାଷିଣୀ
ପିଇ ତା ମୁଖାମ୍ବୁଜୁଁ ମଧୁର ରସେ
କ୍ରୀଡ଼ନ୍ତି ସୌଦାମିନୀ ସଙ୍ଗେ ସହର୍ଷେ ।
ଉସ୍ତାର ରାଜପଥମାଳ ତାହାର
ଯେବେ ସଲିଳବାହୀ ଯନ୍ତ୍ର ନୀହାର,
ଶୀତ ସଲିଳ ଦାନେ ଦୁର୍ଗବାହିର
ହରନ୍ତି ଜଳକଷ୍ଟ ନାଶି ବାସର ।
ନଗରକମଳର ମଧ୍ୟକେଶରେ
ରାଜେ ରାଜପ୍ରାସାଦ ଅତି ଉଚ୍ଚରେ,
ତୁଷାର-ବିନ୍ଦୁର ଉକଟ କୂଟ
ସମ ପ୍ରକାଶି ପ୍ରଭା ହେମମୁକୁଟ ।

ତା ଗୃହପାଶ୍ୱେ ଯେଉଁ ବୃଛ ସଉଧ
ତହିଁ ମଣ୍ଡିତ ଯଥା ଶିତ ବଉ୍ଦ—
ମାଳା-ଭ୍ରମେ ତୁଷାରାଚଳ କନ୍ଦରେ
ନୀଳ ନିର୍ମଳକାନ୍ତ ଶାରଦାମ୍ବରେ ।
ତହିଁ ରାଜକୁମାରଗଣ ପ୍ରମୋଦେ
ଙ୍କନୋଦନ୍ତ ସ୍ୱଚ୍ଛତ୍ରୁ ବଦ୍ୟାବନୋଦେ,
ପୁର ଭିତରେ ପୁରମହିଳାଗଣ
କର ଅପ ଖିଣିଖି ବଳେ ହରଣ
ନୂପୁରନିକ୍ୱଣନେ ଗଜଗମନ—
ଲୀଳା ହୃଦୁରେ କରଥିବେ ବ୍ୟାପନ ।
ହଂସମୃଦୁଗମନା ନୀଳଲୋଚନା
ବୀଣାବଜନତତ୍ପର ଛିନବସନା
ରାଜମହିଳାଗଣ ନିଜ ଶୁଦ୍ଧାନ୍ତେ
ତୁମ୍ଭ ପ୍ରକୃତ ଦେଖି ବସି ଏକାନ୍ତେ
ତାଙ୍କ ସ୍ୱତନ୍ତ୍ରକାନ୍ତ ଲୌମ ବସନେ
ଉତ୍ସୁକ ରତ ହୋଇବେ ଶିବପୂଜନେ,
ଦେଖି ସେକାଳେ ତାଙ୍କ ଶଙ୍କରାର୍ଚ୍ଚନ
ସାର୍ଥ ହୋଇବ ତୁମ୍ଭ ମନ ନୟନ ।
ଯେଉଁ ମୋ ଅନୁରୋଧ ମେଘୋତ୍ତମ,
ସ୍ୱୀକରିବ ସ୍ୱଅଙ୍ଗେ ଅଳପ ଶ୍ରମ,

ପଶିବ ନାଜ ଦେହ ଶିଶିରକଣ
ଝାଡ଼ି କଣାକ୍ତ ବଲଭଦ୍ରଭବନ ।

ଦେଖିବ ବାସୁଦେବ ହୃଦପ୍ରଭତା
ଅଗ୍ରେ ତାଙ୍କ ହୃଦସ୍ପୃ କେମନ୍ତ ବତା

କରିଛୁ ପ୍ରଖ୍ୟାପନ ଧୀର ଡୋଷଣେ
ଅଜ ଉତ୍କଳରାଜ୍ୟ ଘୋର କାନନେ ।

ପରାର୍ଥେ ପୂର୍ଣ୍ଣ ଯାଙ୍କ ଧର୍ମମାଧୁରୀ
ଉଦାରତାସମ୍ପନ୍ନ ବୁଦ୍ଧିଶୁଭ୍ରୀ,

ଛାଳଇ ହୃଦ ତାଙ୍କ ପରମାମୃତ
ରମ୍ୟ ଛନ୍ଦ ସାହିତ୍ୟେ ହୋଇ ଅବୃତ୍ତ ।

ତା ପାର୍ଶ୍ୱେ ନରେଖିବ ମାହାରବର
କାବ୍ୟ-କାନନଶୃଙ୍ଗୀ କାର୍ଯ୍ୟତତ୍ପର,

ପୁରାଇ ସ୍ୱ ଅନ୍ତରେ କାବ୍ୟ ପ୍ରସଙ୍ଗ
ରାଜୀବନେତ୍ରଜ୍ଞବ କେଡ଼େ ସୁରଙ୍ଗ ।

ଅନନ୍ତେ ଅନୁରୋଧ ଯେନ୍ତ ମୋହର
ଧୀରେ ଗମିବ ଥରେ ତୁଷାରଧର,

ଲାଲ ଦୟାନିଧିଙ୍କ ଅନ୍ତର୍ଭବନେ
ହୃଦୟେ ନାଜ ହୃଦ ଅତ ଯତନେ ।

ଦେଖିବ ବୁଦ୍ଧିବିଶାରଦ କୁମାର
କେଡ଼େ ଯତନେ ଭଜ ପଦ ରମାର

ହୋଇ ରାଜନନ୍ଦନ ଭୋଗସଞ୍ଚନ୍ନ
କେତେ ସାଉଁଉଛନ୍ତି ଧନ ରତନ ।

ନ ଥିଲେ ତାଙ୍କ ସମ କେହି ଉଦାର
ଯେତେ ଛନ୍ତି ସେ ସ୍ଥାନେ ରାଜକୁମାର,

ଏଣୁ ଧର୍ମ ଅର୍ଥ ସେ ଦଯ୍ୟାନିଧି
ସାଧିଥିଲେ ସ୍ୱଗୁଣେ ସର୍ବ ସମୃଦ୍ଧି ।

ଅହା କି ସୁମଧୁର ତାଙ୍କ ବଚନ
ସଦା ସଂସ୍କୃତ ଛନ୍ଦେ ଥିଲା ମଣ୍ଡନ ।

ଉନ୍ନତ ହୋଇ କବିଗୁରୁଙ୍କ ବାଣୀ
ଦେଖାଉଥିଲା ତାଙ୍କ ବଦନଠାଣି ।

ଅକାପଟ୍ୟ ତାଙ୍କର ବନ୍ଧୁବତ୍ସଳ,
ଥିଲେ ସେ ଶାନ୍ତଧର୍ମଶୀଳ କେବଳ,

କିନ୍ତୁ ନିର୍ମମ କାଳ ସାଧି ଜିଗୀଷା
ସଫଳ କରିଅଛି ନିଜ ଈରଷା ।

ନ ଯିବ ରାଜପୁରେ ମୀହାରରାଷ୍ଟ୍ର,
ଦେଖିଲେ ତା ଦୁର୍ଦଶା ଅତି ବିକଟ

ସାଧୁ ହୃଦୟ ତୁମ୍ଭ ହେବ କାତର,
ତରଳେ ପରଦୁଃଖେ ସାଧୁ ଅନ୍ତର ।

ନାହିଁ ସେ ପୁରେ ଆଜ ବୈବ୍ୟଶଙ୍କର
ବାମଣ୍ଡାବାସିଙ୍କର ହୃଦ-ଶଙ୍କର ।

ଭସାଇ ପୁରବାସୀ ଦୁଃଖେ କରତେ
ଗମିଛନ୍ତି ସେ ସାଧୁବାଞ୍ଛିତ ପଥେ,
ଅଦ୍ୟାପି ଯାହାଙ୍କର ଗୁଣଗରିମା
ସ୍ପର୍ଶି ବାମଣ୍ଡାବାସୀ ହୃଦୟସୀମା
ତମସାତୀରବାସୀ ଋଷିଙ୍କ ପରି
ରଚଇ ରାମାୟଣ ଗୀତଲହରୀ ।

ସେ ମହାମନାଙ୍କର ମଧ୍ୟମ ଭ୍ରାତ
ସର୍ବଗୁଣ ଭୂଷିତ ହୃଦୟନାଥ,
ନ୍ୟାୟ ବ୍ରିଟିଶପତ ସୁପରସନ୍ନେ
ନିଯୁକ୍ତ ହୋଇଥିଲେ ରାଜ୍ୟଶାସନେ ।
ନ୍ୟାୟ ଧର୍ମଗୁଣେ ସୁବିଚକ୍ଷଣ
ଦେଖି ଯାହାଙ୍କ ସଦା ପ୍ରଜାପାଳନ,
ବାମଣ୍ଡାବାସୀ ଥିଲେ ମୋହିତ ତଥା
କଦମ୍ବ ମକରନ୍ଦେ ମିଳିନ୍ଦ ଯଥା ।

ଭାଗ୍ୟଦେବୀ ପ୍ରସନ୍ନା ଏବେ ହୋଇଲେ
ବାମଣ୍ଡା ଭାଗ୍ୟେ ଭାଗ୍ୟ-ରବି ଉଇଁଲେ ।
କୈଶର ଭାନୁଗଙ୍ଗ ପିତୃଆସନ
ଅଚିରେ କଲ ବୀରବେଶେ ମଣ୍ଡନ ।
ଭଗୀରଥଙ୍କ ପରି ସ୍ୱର୍ଣ୍ଣଧାରାର
ଶଙ୍କରଶିରୁ ଧର୍ମବଳେ ଉଦ୍ଧାର

ରଖିବେ ପିତୃକୀର୍ତ୍ତି ପିତୃପଦାଙ୍କ
ଅଣି ସ୍ୱଧର୍ମବଳେ ସେହି ବାଳକ ।

ମଧ୍ୟାହ୍ନ ପୂର୍ବେ ବନ୍ଧୁ ଦୁର୍ଗ ଚେଳବ,
କୁଳବାଳାଙ୍କ ମୁଖପଦ୍ମ ଦେଖିବ,

ଦେଖିବ ଯନ୍ତୁଁ ଜଳକଲଶ ଧରି
ଗୃହାନ୍ତରକୁ ଯାଉଥିବେ ନାଗରୀ,

ସେ କାଳେ ତାଙ୍କ ନଳିନୀବରଲୋଚନ
ଅପାଙ୍ଗେ କରୁଥିବ ମଧୁବର୍ଷଣ,

କନକଲତା ସମ ଅଙ୍ଗଲତିକା
ଦୋଳାଇ ଚାଲୁଥିବେ ନବ ରସିକା ।

ଫିଟି ନୀଳ କୁନ୍ତଳ-ବେଣୀ ସୁନ୍ଦର
ଲୋଟୁଥିବ କନକ ଚରମପର ।

ତଦନ୍ତେ ଯେନ ବାନ୍ଧୁ, ମୋ ନିବେଦନ
ଯାମ୍ୟେ କରିବ ବେଗେ ପଦଚାଳନ,

ବାଟେ ଭେଟିବ ବନ୍ଧୁ କାନନ ପଲ୍ଲୀ,
ରମ୍ୟ ଗିରିକନ୍ଦର କୁସୁମବଲ୍ଲୀ,

ଶୋଭଇ ପଥମଧ୍ୟେ କି ମନୋରମ
ଶାଳପୂର୍ଣ୍ଣ କେଦାର କନକସମ,

ଉଚ୍ଚଲାନ୍ଦୃତ ରମ୍ୟ କାସାରମାଳ,
ସହକାରକାନନ, ବନ ବିଶାଳ ।

ପଲ୍ଲୀବାସିନୀ ବାଳା ପ୍ରିୟ ସମ୍ପଦ
ତହିଁ ସ୍ତୋପ ସୁମନବାଟୀ ପ୍ରଶଦ ।

ନଦୀକୂଳ ନିବାସୀ ନଗୀନାଗଣ
ଚିରକାନନେ ଗୃହିଁ ଭୂମ୍ୟ ଗମନ

ଶତବର୍ଗମାଳାରେ ମାନ୍ଧାରପନ୍ଥ,
ପୂଜିବେ ତବ ପଦ କରି ବିନତ ।

ମିଳିବ ହିମାମୂଦ ପଥ ଅଗ୍ରରେ
ଅର୍ଦ୍ଧ ଲାଙ୍ଗୁଳୀ ଗଣ୍ଡ ନଦୀ ମଧ୍ୟରେ,

ତହିଁ ସଙ୍ଗ୍ରହ ପଠଯୋଗ୍ୟ ସମ୍ଭାର
ଅଗ୍ରେ କରିବ ବନ୍ଧୋ, ପଦ ପ୍ରଚାର ।

ହେଲେ ବିଶ୍ରାମ ଇଚ୍ଛା ଅଧିକତରେ
ଅଟ୍ଟିବ ଶ୍ରୀଗଣ୍ଡଅଁ ଘଟ୍ଟଶିଖରେ,

ତାଳଚେର ବାମଣ୍ଡା ବେନି ରାଜ୍ୟର
ମଧ୍ୟେ ସେ ଘୋରଘାଟ୍ଟ ସୀମା ପ୍ରାନ୍ତର,

ଜଳପଥ ପଥିକ ସଙ୍କଟ ସ୍ଥାନ
ଗିରିସଙ୍କଟ ଖାଇବର ସମାନ ।

ଅନନ୍ତେ ଭୂମ୍ୟ ପଥ କିଶୋରଚନ୍ଦ୍ର—
ପରିପାଳିତ ରାଜ୍ୟେ ହିମଜଳଦ,

ନଦୀ ବେନି କୂଳନେ ହେବ ସୁନ୍ଦର,
ଦେଖିବ ପାଶେ ବହୁ ଗ୍ରାମ ପ୍ରାନ୍ତର ।

ସ୍ୱପ୍ରପାଳନ ଏହୁ ରାଜବଂଶର
ପ୍ରଧାନ ବ୍ରତ ଥିଲା ମନେ ଭଗ୍ନର,
ଏଣୁ ବ୍ରାହ୍ମଣପୂର୍ଣ୍ଣ ବ୍ରାହ୍ମଣୀ ନଈ—
ତାର ନୈମିଷାରଣ୍ୟ ପର ଦଶଇ ।

ବାଟେ ଭେଟିବ ଭୁମ୍ବେ ବାର ଅଚଳ (୧)
ସେ ଅଟେ ତାଳଚେର ଚିର ସମ୍ବଳ,
ନୈନାକ କଳ୍ପ ପର ସିକ୍ତ ମଜ୍ଜନ
ବ୍ରାହ୍ମୀସଲିଲେ ଧୋଏ ନିଜ ବଦନ ।

କୃତଧୀ ତାଳଚେର ଧର୍ମଧ୍ୱଜପତ୍ର
କୀର୍ତ୍ତି ଧବଳକର ଶୁଭ୍ର ଧାଧିତ
ମଣ୍ଡିତ ହୋଇ ବ୍ରାହ୍ମୀ ବେନ ପୁଳିନ
ତହିଁ କରନ୍ତି ମହାଶୋଭା ମିଳନ ।

ସ୍ୱର୍ଣ୍ଣଧା ବେନ ତୀରେ ବିହବରାଜ
ଧ୍ୱଜା ଉଡ଼ଲା ସମ ମାହାରରାଜ,
ଏ ବ୍ରାହ୍ମୀତୀରେ ତାଳଚେରନାଥର
ବିଜୟଧ୍ୱଜା ସଦା ନଭେ ଫର୍ଫର ।

ବକ୍ରବଙ୍କିତ ବଜ୍ରକୂଟ ଦୁର୍ଗର
ହୃଦୟସ୍ପୃଗ୍ରାହ୍ୟ ବନ୍ଧୁ, ଅତି ସୁନ୍ଦର

(୧) ବାରୁଆଁ ତାଳଚେରର ଏକମାତ୍ର ଉଚ୍ଚ ପର୍ବତ ।

ଦେଖ ରାଜବଜସ୍ତୃକେତନାବଳୀ
ହେଏ ପର ହୃଦୟ ଧଇର୍ଯ୍ୟ ଦଳ ।

ପ୍ରାଣ ଯାଙ୍କର ଅଛ ତୁମ୍ଭେ ଅନନ୍ଦେ
ବିବେକରାଜ୍ୟ ମହା ଉଦ୍ୟାନପଦେ,

ସିଦ୍ଧିରେ ତାଙ୍କ କୀର୍ତ୍ତି କର ଲୋକନ
ସଫଳ ହେବ ନଷ୍ଟେ ତୁମ୍ଭ ନୟନ ।

କର ବାରୁଅଁ ତୂଳ୍ପ ଅବତରଣ
ଅଗ୍ରେ କଲେ ମୀହାର ! ପଦବର୍ଦ୍ଧନ,

ନଷ୍ଟେଁ କମୃଶ୍ୱ ହେବ ତୁମ୍ଭ ଲୋଚନ
ଦେଖି ସମ୍ବଲ ଚନ୍ଦ୍ର ପାନ୍ଥସଦନ ।

ପଛେ ତୁମ୍ଭର ଚକ୍ରଶୈଳନାଃଶ୍ରେଣୀ
ହବା ବନବାଳାର ମର୍କତବେଣୀ,

ମଣ୍ଡିତ ହୋଇ ବନ୍ୟ କୁସୁମମାଳେ
ତୋଷିବ ତୁମ୍ଭ ନେତ୍ର ଏକା ସେକାଳେ ।

ଭେଟିବ ପଥେ କେତେ କୃଷକବାଳା
ମୃଦୁତନୁଙ୍ଗୀ ଶ୍ରମ-ଘର୍ମ-କପୋଳା,

ନବୀନା ଶାଳୀକ୍ଷେତ୍ରୁଁ କଳାଇ ଧର
ଗୃହକୁ ଫେରୁଥିବେ କର୍ମ ଅବସର,

ଗୃହେଁ ତାଙ୍କର ମାଙ୍ଗଭଙ୍ଗୀକଳ୍ପନା,
ବସନ ପରଧାନ ହାବ ରଚନା,

ଅନନ୍ୟ ସେ ଯୋଷାଙ୍କ ବେଶସମ୍ଭାର
ଦେଖି ବଳେ କରିବ ନିନ୍ଦା ଈଶ୍ୱର ।

ତଦନ୍ତେ ନୀହାରେଶ ! ମେଲି ନୟନ
ଦେଖିବ ଢେଙ୍କାନାଳ ଗିରି ଗହନ,

ନୀଳମଣିମଣ୍ଡିତ ପ୍ରାଚୀର ପରି
ରହିଛି ବ୍ରାହ୍ମୀ ପ୍ରାଚୀତୀର ଅଦୂର ।

ହେମନ୍ତ ସ୍ୱର୍ଣ୍ଣକରେ ମଣ୍ଡି ଶ୍ରୀଅଙ୍ଗ
ମଧୁର ପ୍ରଭାତରେ ଦ୍ୱାଦଶ ଅଙ୍ଗ

(ତହିଁ) ବିଶ୍ୱହର୍ଷବର୍ଦ୍ଧନ ଦେବ ଭାସ୍କର
ଢାଳନ୍ତି ଜ୍ୟୋତିପୂର୍ଣ୍ଣ ସୁଧାଶୀକର ।

ସେ ଗିରିମାଳଚୂଳେ କରି ଦର୍ଶନ
ଅରୁଣାରୁଣମୂର୍ତ୍ତି ବାଳ ତପନ,

ଢାଲଚେରନ୍ନବାସୀ ପ୍ରବୀଣଗଣ
ଅର୍ପି ବ୍ରାହ୍ମୀ ପୁଳିନ ସ୍ୱରୂପ ବନ

କଳ୍ପନାତୂଳିକାରେ ମାନସରଙ୍ଗ—
ରଞ୍ଜି ଅଙ୍କନ୍ତି କେତେ କାବ୍ୟପ୍ରସଙ୍ଗ ।

ପଥେ ଭେଟିବ ତୁମ୍ଭେ ହିମବର୍ଜନ,
କେତେ ଆର୍ଯ୍ୟଗୌରବ ବିପ୍ରଶାସନ,

ଦ୍ୱିଜବାଳିକାଗଣ ନିରେଖି ତବ
"ଶୁଭ୍ର ଶଙ୍ଖକୁନ୍ଦେନ୍ଦୁକାନ୍ତିବିଭବ"—

ପୂର୍ଣ୍ଣି ଭୀମ ବିଶାଳ ବପୁ ସୁନ୍ଦର
ପ୍ରଭାତକାଳେ ହୋଇ ଅତି କାତର
ବ୍ରାହ୍ମୀପୁଳନେ ରଚ ମୃଦୁ ଗମନ
ହେବେ ତୁମ୍ଭ ନୟନାନନ୍ଦବର୍ଦ୍ଧନ ।
ଅବା ସେକାଳେ ତାଙ୍କ ତନୁବଳ୍କଣି
ତୁମ୍ଭ ସ୍ପରଶେ ଶୀତେ ଉଠିବ ଥରି,
ଦିଶିବ ମନ୍ଦାକନୀତଟରେ ଯେସନ
ସ୍ୱର୍ଣ୍ଣ ବ୍ରତତୀମାଳ ଦିଶେ ଶୋଭନ ।
ଅନନ୍ତେ ନଦୀଗର୍ଭୁଁ ତୁମ୍ଭ ନୟନ
ଅଗ୍ରେ ହୋଇବ ଯେବେ ବ୍ୟଗ୍ରେ ପତନ,
ଦେଖିଲେ ତାଳଚେର ନଗର ବେଶ
ମନେ ଲଭିବ ନଶ୍ଚେଁ ସୁଖ ଅଶେଷ ।
ରମ୍ୟ ରାଜସଉଧ ଅଗ୍ରଦେଶରେ
ରାଜେ ତୋରଣଦ୍ୱାର ନବ ବେଶରେ,
କିବା ଉତ୍କଳ-ରାଜ୍ୟ-ଶିର-ମୁକୁଟ
ଭୂଷାରଶ୍ମୁଭ୍ର ଗୌରିଶଙ୍କର-କୂଟ ।
ପୁଣ୍ୟାତ୍ମା ତାଳଚେର ଧର୍ମମଣ୍ଡନ
ରାମଚନ୍ଦ୍ର ରାଠୋରକୁଳଭୂଷଣ-
ଶୁଭ୍ର-କୀରତି-ଯୋଷା ଲାବଣ୍ୟକାନ୍ତି
ସ୍ୱ ଅଙ୍ଗେ ମଣ୍ଡି ଗର୍ବେ ଠେକଛି ଖ୍ୟାତି ।

ପ୍ରାସାଦୋଦରେ ତହିଁ ନୀଳବସନା
କ୍ରୀଡ଼ନ୍ତି କେତେ ହଂସମୃଦୁଗମନା
ସର୍ବଦା ଶୁଚିମତି ବାମଲୋଚନା
ପୁରମହିଳାରାଜି ଜନବନ୍ଦନା ।

ତାଙ୍କ ପଦନୂପୁରଧ୍ୱନିସଙ୍ଗୀତ
ସଦା ସେ ରାଜପୁର କରେ କମ୍ପିତ ।

ଭାବରାଜ୍ୟ ଅମୂଲ୍ୟ ପ୍ରେମସମ୍ପଦ
ସେ ରାଜପୁରେ ମିତ୍ର ! ସଦା ବିଶଦ ।

ରାଜର୍ଷି ବାସୁଦେବ ପ୍ରିୟନନ୍ଦନା
ଯେ ରାଜ୍ୟ-ରାଜଲକ୍ଷ୍ମୀ ଶୁଭ୍ରଦର୍ଶନା,

ଯାହାଙ୍କୁ ଲଭି ନିଜ ବାମାଙ୍କ ଶିରି
କୃତାର୍ଥ ତାଳଚେର ନୃପକେଶରୀ ।

ଚନ୍ଦ୍ରେ ଆଶ୍ରିଲା ସମ ଚନ୍ଦ୍ରମୁଖୀ
ଯେ ଆଶ୍ରି ହୃଦେ ନିଜ ସ୍ୱାମିର ସୁଖ

ଉଜ୍ଜ୍ୱଳନ୍ତ ଶୁଦ୍ଧାନ୍ତଃ ତାଳଚେରର
ବିଷାଦହୀନ ଚିତ୍ତେ ନିତି ବାସର ।

କେତେ ଆତୁର ଆର୍ତ୍ତ ଅନାଥ ଜନ
ଦେଖିବ ତାଙ୍କ ଅଗ୍ରେ ହିମରଜନ,

କଳ୍ପଲତିକା ସେ କି ଦୀନଜନର,
ଯା ହୃଦେ ପୂର୍ଣ୍ଣ କୃପାମୃତଶୀକର ।

ହୃଦୟ ପ୍ରମୋଦରେ ଯାଙ୍କ ଉସ୍ତଙ୍ଗ
ଉଷା-ପୂର୍ବାଶା ପଡ଼ ଦଶେ ସ୍ୱରଙ୍ଗ,
ଯେଉଁ ନନ୍ଦନଦ୍ୱୟ ଯଶବନ୍ଦନ
କରେ ସଜ୍ଜନମୁଖ ସଦା କୀର୍ତ୍ତନ ।

ବିଦ୍ୟା ବିନୟ ସମ ଯେ ସୁତଦ୍ୱୟ
ବହୁ ସ୍ୱପିତୃଗୁଣେ ନବାଭ୍ୟୁଦୟ
ଶାସନ୍ତି ତାଳଚେର ପ୍ରଜାମଣ୍ଡଳୀ
ସର୍ବଦା ସତ୍ୟ ନ୍ୟାୟ ମାନସେ କଳି ।

ନାହିଁ ଯାହାଙ୍କ ସମ ଆଜ ଉତ୍କଳେ
କେହୁ ସମର୍ଥ ଅଶ୍ୱକ୍ରୀଡ଼ାକୌଶଳେ,

ଅବ୍ୟର୍ଥ ଅଟେ ଯାଙ୍କ ଲକ୍ଷ୍ୟଭେଦନ
କରି ହିଂସ୍ର ଶ୍ୱାପଦ ଶିରଚ୍ଛେଦନ,

ଯାଙ୍କର ନିତ ନିତ ବନଭ୍ରମଣ—
କାଳେ ବନ୍ଧୁକନାଦ କରି ଶ୍ରବଣ
ପ୍ରବଳ ମହାବଳ ଗିରିକନ୍ଦରେ
ପୁଚ୍ଛକୁଞ୍ଚନଲୀଳା ଅଣ୍ଡି ସାଦରେ

ଖୋଜେ ସ୍ୱବଂଶାଦ୍ରି ସଙ୍ଗେ ନିଭୃତାଳୟ,
ଚିରି ଚକ୍ଷୁଯୁଗଳୁ ଜ୍ୟୋତି ବିଳୟ ।

ସେ ଅନ୍ତଃପୁର ବାଷ୍ପ ! କଲେ ଦର୍ଶନ
କୃତାର୍ଥ ହେବ ନଷ୍ଟେ ତୁମ୍ଭ ଜୀବନ ।

ରାଜେ ରାଜପ୍ରାସାଦ ଅଗ୍ରେ ବକୁଳ
ବହୁ ନବପଲ୍ଲବ ନବ ମୁକୁଳ,
ଛାୟା ଶୀତଳ ତାର ଶ୍ରାନ୍ତ ଜନର
ହରେ ମାର୍ତ୍ତଣ୍ଡଭ୍ରମଣକ୍ଲାନ୍ତନିକର ।

ତା ଅଗ୍ରେ ପ୍ରାସାଦରେ ଉପଦ୍ରବାର୍ତ୍ତୀ
ରାଜନ୍ତି ଜ୍ୟୋତିର୍ମୟୀ ଜଗତଧାତ୍ରୀ,
ମହିଷାସୁରମର୍ଦ୍ଦିନୀ ଗିରିନନ୍ଦିନୀ
କନକଦୁର୍ଗା ରାଜବଂଶବର୍ଦ୍ଧିନୀ,

ଭଜି ଯା ପାଦପଦ୍ମ ସେ ରାଜବଂଶ
ଭବେ ଅର୍ଜିଛି ସୁଧାବିମଳ ଯଶ,
ଅପସରନ୍ତି ଶତ୍ରୁ ଦେଖି ଯାହାର
ମନ୍ଦିରଧ୍ୱଜା ଦୂରୁଁ ନୀହାରବର,

ପୂତସଲିଳା ବ୍ରାହ୍ମୀତୀରେ ବାନ୍ଧବ !
ଦେଖ ତାଙ୍କ ବିହାର ବଣଦୁର୍ଲ୍ଲଭ ।
ନଗର ଘେର ଶୋଭେ ସେ ରାଜପଥ
ଭ୍ରମି ପୂରାନ୍ତି ଜନେ ସ୍ୱମନୋରଥ,

ଉଭୟ ପାର୍ଶ୍ୱେ ଘେନ ଅଟ୍ଟାଳମାଳ
ମହାଦେବୀର ସେ କି ରତନମାଳ ।
ଉଦ୍ୟାନବିମଣ୍ଡିତ ରାଜସଉଧ
ଦିଶଇ ଯଥା ଶାରଦୀୟ ବଉଦ,

ନାନା କ୍ରୋଟନ ବୃକ୍ଷେ ସୁଶୀଳାଗଣ
ନିତ୍ୟ କରନ୍ତି ତହିଁ ଜଳସିଞ୍ଚନ ।

ବିଚିତ୍ର ଚିତ୍ରଯୁତ ବସନ ପରି
ଯାଏ ଉଦ୍ୟାନମାଳା ଶୋଭା ପ୍ରସରି ।

ନବ ବିକ୍ଷୁତ ଫୁଲରାଜ୍ୟ-ସମ୍ପଦ
ତହିଁ ଏକତ୍ର ଠୁଳ ଦେଖ ହୃଦ ।

ଅଦୂରେ ତାଳଚେର ନରନାଥର
ଉନ୍ନତ ହୃଦ ସମ ସୁମନୋହର

ବିଶାଳକାୟ "ରାଣୀପାର୍କ" ଉଦ୍ୟାନ
ଧନଦ ଚୈତ୍ରରଥବନ ସମାନ ।

ଯଥା ସ୍ୱର୍ଗକାନନ ନନ୍ଦନବନେ
ବିହରନ୍ତି ବାସବ ଆନନ୍ଦ ମନେ,

ତା ବକ୍ଷ-କୁଞ୍ଜବନେ ନରେଶ-ହୀର
ତଥା ସେବନ୍ତି ସନ୍ଧ୍ୟାକାଳ ସମୀର ।

ଅଢ଼ାଇକୋଶବ୍ୟାପୀ ବେଢ଼ା ପ୍ରାଚୀର
ସେ ରାଣୀ ଉପବନ କରେ ରୁଚିର ।

ଯହିଁ ବିଶେଷ ବିହାରପନ୍ତି ଗବୟ
ବିହରୁଥାନ୍ତି ମନେ ହୋଇ ନିର୍ଭୟ ।

ଯେତେ ବନ୍ୟ ପାଦପ ତହିଁ ଶୋଭଇ
ନୀଳକାନ୍ତିରେ ଜନମନ ମୋହଇ ।

ବସି ଲତା ଅନ୍ତରେ ମତ୍ତ କପୋତ
ରଚେ କାମ ଉନ୍ମାଦେ ନାଦ-ହୁଂକୃତ ।

ଚଦ୍ଧରନ୍ତି ସେ ବନେ ଅନନ୍ଦମନେ
କେତେ ମୃଗଶାବକ ମୃଗୀଗନ୍ଦଣେ,

ନୀଳ ଵମଳ ନେତ୍ରମାନ ତାଙ୍କର
ତାଲେ ଦର୍ଶକନେତ୍ରେ ଶୀତ ଶୀକର ।

ଉଦ୍ୟାନପଥସବୁ ସୁପରିଷ୍କୃତ
ହୋଇ ନିର୍ମଳ ଦୂର୍ବାଦଳେ ଅବୃତ

ଉଭୟ ସନ୍ଧ୍ୟା ମଧ୍ୟରେଖା ସମାନ
କରେ ସର୍ବଦା ଜନମନମୋହନ ।

ଯଥାସ୍ଥାନେ ଶୋଭଇ କୋମଳ ତୃଣ-
ଆସ୍ତୃତ କ୍ରୀଡ଼ାଭୂମି ଅତି ମସୃଣ ।

ତହିଁ ଶୁଭ୍ରବସନା ମନ୍ଦଗମନା
ରମଣୀଗଣ ହୋଇ ଅନନ୍ଦମନା

ମଣ୍ଡି ସ୍ତମନେ ନୀଳ କବରୀଭାର
ଅନନ୍ଦେ ଧରି ନିଜ ବୟସ୍ୟାକର

ମାନସସରସୀରେ ମରାଳୀ ପରି
କ୍ରୀଡ଼ନ୍ତି ସନ୍ଧ୍ୟାମୁଖେ ନବନାଗରୀ ।

ତହିଁ ରାଜନ୍ତି ଯେତେ ସ୍ୱଚ୍ଛ କାସାର
ନକ୍ଷତ୍ରମୟୀ ନିଶା ଯଥା ନୀହାର,

ନୀରସମ୍ପଦେ ତାଙ୍କ ସଦା ସୁଢ଼ଳ
ନୀଳ କୁମୁଦ ଶ୍ୱେତ ଫୁଲ୍ଲ କମଳ ।

ଜଳେ କ୍ରୀଡ଼ନ୍ତି କାମମତ୍ତ ମରାଳ
ବକ ସାରସ ଚକ୍ରବାକଯୁଗଳ ।

ପକ୍ଷିସଙ୍ଗୀତେ ସଦା ସେ ଘନବନ
ସଙ୍ଗୀତାଳୟ ପରି ମନୋରଞ୍ଜନ ।

ଗୃହୁ ଚଉରୀମାନ ଲତାମୂଳର
କିବା ବିଶ୍ରାମାଗାର ଶ୍ରାନ୍ତ ଜନର ।

ଲତାକୁଞ୍ଜ ବିହାରନିଳୟତୟ
ପୁଷ୍ପସୌରଭେ ସଦା ସୁରଭିମୟ ।

ସ୍ଥାନେ ସ୍ଥାନେ ବିରାଜେ ପ୍ରାସାଦାବଳୀ
ଚିତ୍ର ସ୍ୱର୍ଣ୍ଣିରେ ଲତାକୁସୁମମାଳି,

ଯହିଁ ନିବାସ ରଚି ଅତିଥିଗଣ
ରାଜହଂସ କରନ୍ତି ପରିକଳନ ।

ଦେଖିଥିଲେ ସେ ଉଦ୍ୟାନ ମୋହନଛବି
ତୁମ୍ଭ ହୃଦେ ହରିବେ ବିବେକ-ରବି ।

ତାଙ୍କ ଶୁଭ୍ର କିରଣେ ହୃଦୟତମ
ଅଜ୍ଞାନରାଜ୍ୟେ ଯାଇ ନେବ ବିଶ୍ରାମ ।

ବଦାନ୍ୟବର ତାଲଚେରନାଥଙ୍କ
ଉନ୍ନତ ହୃଦ ଦେଖି ବାଷ୍ପନାୟକ,

କର ପାରବ ପରିକଳ୍ପନା ଚିତ୍ତେ
ଗଢ଼ା ସେ କେଉଁଭାବେ କେଉଁ ନମିତ୍ତେ ।

କେଡ଼େ ଉଦାର କେଡ଼େ ପ୍ରଭଭାବାନ
କେଡ଼େ ପ୍ରତାପଶୀଳ କେଡ଼େ ମହାନ

କେଡ଼େ ଗୁଣଙ୍କ ତାଲଚେର ନରେନ୍ଦ୍ର
ବୁଝିବ ହ୍ରମାମୃଦ କଶୋରଚନ୍ଦ୍ର ।

ଅନନ୍ତେ ଦକ୍ଷିଣାସେ୍ୟ କଲେ ଗମନ
ହେବ ଭୁଷାରରଜ ତୁମ୍ଭ ଦର୍ଶନ

ତାଲଚେର ସ୍ୱଯ୍ମ୍ଭୂ ପଶ୍ଚିମେଶ୍ୱର—
ମହାଦେବଙ୍କ ଉଚ୍ଚ ସୌଧଶିଖର ।

ଶୁଣି ସେ ପ୍ରାସାଦରେ ଶିବବନ୍ଦନ
ଶିବାପରାଧକ୍ଷମାପଣ ସ୍ତବନ

ମଧୁର ସ୍ୱରସ୍ଫୁଟ ବିପ୍ରକଣ୍ଠର
ତୃପ୍ତ ହୋଇବ ତୁମ୍ଭ ଶ୍ରାନ୍ତ ଅନ୍ତର ।

ଦେଖିବ ପୁନଃ ତହିଁ ହ୍ରମରାଜନ,
ନବନିର୍ମିତ ବାଷ୍ପଯାନ-ଅୟନ ⁕

ତାଲଚେର କୋଇଲାଖଣି ନିକଟେ
ଏ ମାଲମାର୍ ବ୍ରାହ୍ମୀ ପଶ୍ଚିମତଟେ ।

---

⁕ ନବ ରେଲପଥ

ଅନନ୍ତେ ନମି ହୃଦେ ଭକ୍ତିମୋଦେ
ଜ୍ୱାଳାମାଳିନୀ ଦେବୀ ହିଙ୍ଗୁଳାପଦେ
ଉଡ଼ିବ ତାଳଚେର ପୂର୍ବାହ୍ନ ପରେ
ଚମ୍ପିବ ଢେଙ୍କାନାଳ ଅଭିମୁଖରେ ।

ସତର୍କେ ଅବତରି ଜଟିୟାଘଟି
ଶ୍ରୀ ରାମଚଣ୍ଡୀପଦେ ବନ୍ଦ୍ୟେ ଖଣ୍ଟି
ଗମିବ ହିମଧର ! ଆନନ୍ଦମନେ
ବନମାଳିନୀ ବ୍ରାହ୍ମୀଗିରିକାନନେ

ନୀଳ ନିର୍ମଳ ବ୍ୟୋମସ୍ପର୍ଶୀ ଶିଖର
ବିଶାଳ ଗିରିମାଳ ଢେଙ୍କାନାଳର
ଶୃଙ୍ଗସମୂହେ ଯେବେ ଭ୍ରମି ଗମନ
ହେବେ ଅଚଳ ରାଜ୍ୟେ ଦୃଷ୍ଟିଷବାନ ।

ପଥେ ଭେଟିବ କେତେ ଘନ କାନନ
ପାଇକପରିପୂର୍ଣ୍ଣ ପଲ୍ଲୀସଦନ
ବିସ୍ତାର ସନ୍ଧକାର ରମ୍ୟ ଆରାମ
ବିସ୍ତୃତ ଇକ୍ଷୁକ୍ଷେତ୍ର ମନୋଭିରାମ

ସେ ନୀଳ ଆମ୍ରକୁଞ୍ଜେ ବସି କପୋତ
ପ୍ରେମବିହ୍ୱଳେ ରତି ମତ୍ତ ହୁଂକୃତ
ସ୍ମରାଇଦେବ ମୋର ବେଦନାବଳୀ
ନ ଭୁଲିବ ଯେମନ୍ତେ ନୀହାର ବଳୀ !

ଦେଖିବ କ୍ରୋଶକ୍ରୋଶାନ୍ତରେ ନଦୀର
କେତେ ଭଗ୍ନ ସମ୍ପୂର୍ଣ୍ଣ ଶିବମନ୍ଦିର !

ଟେକ ଖାଣ୍ଡ ତ୍ରିଶୂଳ ନଭପ୍ରାଙ୍ଗଣେ
ମୂର୍ଚ୍ଛୁଥିବେ ଶୋକାଶ୍ରୁ ଅଭ ମଉନେ ।

ସ୍ମର ପ୍ରାଚୀନଙ୍କର ଉଚ୍ଚ ହୃଦୟ
ଆଜ ଉତ୍କଳ ଜାତ ଦଶାନତୟ

ନଷ୍ଟସ୍ତୁ ତୁମ୍ଭ ହୃଦେ ହର୍ଷ ବିଷାଦ
ଉଭୟି ବନ୍ଧୁ ! ଆରମ୍ଭିବେ ବିବାଦ ।

ଅଗ୍ରେ ଚଳିଲେ ଗଡ ହିମଗ୍ରିଜନ,
ଦେଖିବ ଢେଙ୍କାନାଳ ଦୁର୍ଗକେତନ

ଉଡ଼ଇ ଫରଫରେ ବାୟୁହିଲ୍ଲୋଳେ,
ଗିରମେଖଳା ଦିଶେ ବୃକ୍ଷଗହଳେ ।

ଯଥା ନୀଳବ୍ୟୋମରେ ଶୁଭ୍ର ଅମ୍ବୁଦ
ଭାସେ ଶରଦକାଳେ ହିମଜଳଦ,

ତଥା ରାଜପ୍ରାସାଦ ଢେଙ୍କାନାଳର
ଗିରିକଟିଦେଶରେ ଦିଶେ ସୁନ୍ଦର ।

ଅଭ ପ୍ରଭାତୁଁ ସେହି ଗିରିଦୁର୍ଗର
ପାଶେ ଗମିଲେ ତୁମ୍ଭେ ମାଦ୍ୱାରବର୍,

ନଗରୀ ଉପକଣ୍ଠେ ଦେଖିବ ତାର
ରାଜେନ୍ଦ୍ର ଭାଗୀରଥି ସ୍ୱଚ୍ଛ କାସାର ।

ଶ୍ୱେତ କୁମୁଦାବଳୀ ମଣ୍ଡି ସ୍ୱବକ୍ଷେ
ତାରାମଣ୍ଡିତ ରାତ୍ରି ସମ ପ୍ରତ୍ୟକ୍ଷେ

ରାଜର ସେ ସରସୀ ଅତି ମଞ୍ଜୁଳ,
କ୍ରୀଡ଼ନ୍ତି ଜଳେ ମତ୍ତ ମରାଳମାଳ ।

କେତେ ନାଗରୀ ତହିଁ ରସଧାଗରୀ
ନରାଶେ ଅଭିସାରକୁଞ୍ଜରୁ ଫେରି

ବିଧୌତ କରୁଥିବେ ମୁଖନଳିନ
ଭୟେ ଉତ୍ତୋଳ ସର ଶୀତ-ଜୀବନ ;

ପ୍ରଚର ଧୀରଗତି ନୀହାରବର,
ମିଳବ ରାଜପୁରେ ଅତି ସତ୍ୱର

ଦେଖିବ ରାଜପୁର ଶୁଦ୍ଧାନ୍ତମାନ
ଜିଣେ ଦେବେନ୍ଦ୍ରପୁରଶୋଭା ମହାନ ।

ପୂତଚରିତ୍ରବତୀ ବିଶୁଦ୍ଧମନା
ବିହରୁଥାନ୍ତି ତହିଁ ଯେତେ ଲଳନା ।

ଧର୍ମକାର୍ଯ୍ୟରେ ଥାଆନ୍ତି ସଦା ତତ୍ପର,
ଦେଖିଲେ ହେବ ହୃମ ଭକ୍ତି ତୋହର ।

ଧର୍ମସଙ୍ଘେ ଭରା ସେ ରାଜପୁର
ବାଟରେ ଜନମୁଖେ ନାଡ ମଧୁର ।

ଭାଗ୍ୟ ଅଭାଗ୍ୟେ ଆଜ ନୀହାରପଥ
ନାହିଁ ତା ପୂର୍ବ କାନ୍ତି ପୂର୍ବ ବିଭାତ ।

ବାଳକ ନବ ରାଜଶାସନଭାର
ବହି ସ୍ୱକରେ ସେ ତ ମହାଜଦାର

କରନ୍ତ ପ୍ରଜାଗଣ ପରୂରଷଣ
ନଜ ଔରସଜାତ ପୁତ୍ର ସମାନ ।

ସନ୍ଦର୍ଶେ ରାଜଦୁର୍ଗ କରୁ ଭ୍ରମଣ
ଦେଖି ନବ ନୃପଙ୍କ ନବ ଶାସନ

ନମି ବଳରାମଙ୍କ ପଦକମଳେ
ଛାଡ଼ିବ ଢେଙ୍କାନାଳ ଦୁର୍ଗ ତଥିଲେ ।

ତଦନ୍ତେ ମାହାରେଶ ! ତୁମ୍ଭ ନୟନେ
ବଭାତ ହେବ ପୂର୍ବ ଦଗ ଗଗନେ

ନଭସ୍ପର୍ଶୀ ମାଳେନ୍ଦ୍ରମଣିସଂକାଶ
ମହାଶିଖରଧାରୀ ସେ. କପିଳାସ ।

ଯା ଶିର ରମ୍ୟକୁଞ୍ଜ ଏକାନ୍ତସ୍ଥଳ
ମଣ୍ଡିତ ବାଜପୂର ବଶାଳ ଶାଳ

ପର୍ଣ୍ଣବହଳ ଶତପର୍ଣ୍ଣ ପାଦପ
ଚମ୍ପକାଶୋକ ବନ୍ୟ ଲତାକଳାପ ।

ବହେ ଧୀର ପବନ ମୃଦୁ ମଞ୍ଜୁଳ
କୁଞ୍ଜ-କୁଞ୍ଜରେ ରଟେ ମତ୍ତ କୋକଳ,

ଅବସନ୍ତେ ବହରେ ଯହିଁ ବସନ୍ତ
ହୋଇ ଚନ୍ଦ୍ରଶିଖର ପ୍ରସ.ଦବନ୍ତ ।

ଯହିଁ ସର୍ବଦା ହୋଇ କୁସୁମମୟ
ଶୋଭନ୍ତି ସୁକୋମଳ ଲତାନିଚୟ ।
ବହେ ଝର୍ଝରନାଦେ ଗିରିଝରଣା
ବହି ସ୍ୱଚ୍ଛ ସଲିଲ ହୋଇ ଫୁରୁଣା,
ନଭ୍ର ଚିରଗୁଞ୍ଜାରମ୍ଭ ଯାହାର
ଯେହ୍ନ କୋଲେ ଅମୃତ ମୃଗୀନ୍ଦ୍ରବାର
ଘୋଷେ ମଙ୍ଗଳମୟ ଶଙ୍କରଯଶ,
ଯହିଁ ବୃଷ୍ଟି ସତତ ଅମରରସ ।
ଚିରପାଦପେ ବସି ବିହଙ୍ଗକୁଳ
ହୋଇ ନିର୍ମଳ ହୃଦେ ପ୍ରେମ-ଆକୁଳ
ଚନ୍ଦ୍ରଶେଖର ଉମାନାମ ବଦନେ
ଘୋଷନ୍ତି କଳନାଦେ ଆନନ୍ଦମନେ ।
ତହିଁ ବିଶ୍ରାମ କରି କ୍ଷଣ ମାତର
ପୂଜିବ ମାହାରେଶ ! ଉମାଶଙ୍କର,
ଲଭି ଅଭୀଷ୍ଟ ବର ଶଙ୍କର ପାଶେ
ଉଠିବ ଲମ୍ଫ ଦେଇ ଶିଖରଦେଶେ,
ଊର୍ଦ୍ଧ୍ୱ ଶିଖରେ ଗିରିବରର ବସି
କରେ କୋମଳ ଲତାବଳୀ ପରଶି
ନୟନ ନିବେଶିବ ଦିଗ ଦକ୍ଷିଣେ
ଯେହ୍ନ ମୋ ଅନୁରୋଧ ବାନ୍ଧିବ କ୍ଷଣେ !

ଦେଖିବ ଦୂରେ ଚିତ୍ରଉତ୍ପଳା ତୀର
ଧନଦମାଳିନୀକୁ କରେ ଧିକ୍କାର ।

ଉଭୟ ତୀର ତାର ଦିଶେ ଶୋଭନ
ଧରି ବିଶାଳ ସନ୍ଧକାର କାନନ ।

ନୀଳାକାଶେ ଶାରଦ ତାରକା ସମ
ତା ମଧ୍ୟେ ସୌଧମାଳ କି ମନୋରମ !

ଭାସେ ନଦୀବକ୍ଷରେ ରମ୍ୟ ତରଣୀ
ନିଜ ଛଟାରେ ଜିଣି ବାଳ ତରଣି ।

ପଥେ ଭେଟିବ ତୁମ୍ଭେ ଶୀତ ବାରିଦ,
କେତେ କାନନପଲ୍ଲୀ ଓ ଜନପଦ ;

କନକକାନ୍ତି ଶାଳିପୂର୍ଣ୍ଣ କେଦାର
ବିଶାଳ ନାରିକେଳପୂର୍ଣ୍ଣ ପ୍ରାନ୍ତର ।

ଦେଖି ଦୁର୍ଗ ସୁନ୍ଦର ଆଠଗଡ଼ର
ନ ଭୁଲି ତହିଁ ଅଗ୍ରେ ଯିବ ନୀହାର,

ଭେଟିବ ନଦୀଗର୍ଭେ ଧବଳେଶ୍ୱର,
ଶିରେ ସୁନ୍ଦର ଯାଙ୍କ ଧବଳକର ।

ଚନ୍ଦ୍ରବାସରେ ତହିଁ ଶିବସେବନ
ଅର୍ଥେ ଜମନ୍ତି କେତେ ସାଧୁ ସୁଜନ,

ତେଜି କଟକ କୁଳକାମିନୀକୁଳ
ନିତ୍ୟ ପୂଜନ୍ତି ତାଙ୍କ ପଦଯୁଗଳ ।

ମୃଗଲୋଚନା ନବ ଲଲନାଗଣ
ଗଣି ପଦନୂପୁର ମଧୁର କ୍ୱଣ
ନାଚ ଉଠିବ ତୁମ୍ଭ ହୃଦୟ ଥରେ
ସ୍ମର ମୋ କଥା ମନେ ଆନନ୍ଦଭରେ ।
ଅଦୂରେ ନରେଖିବ ବାନ୍ଧବବର,
ଉଚ୍ଚ ପ୍ରାସାଦପୂର୍ଣ୍ଣ ନଗରବର
ରାଜଇ ସହକାରକୁଞ୍ଜ ଅନ୍ତରେ
ନୀଳାକାଶେ ରଜନୀନାଥ ପ୍ରକାରେ ।
ବେଢ଼ିଛି ପରା ଜଟା ଗିରଶଙ୍କର
ଶୁଭ୍ରସଲିଳା ଗଙ୍ଗା ଶୀତଶୀକର,
ଚକ୍ରବାକନୀ ଚଦ୍ୱୋଜ୍ଜ୍ୱଳା ବାହିନୀ
ବେଢ଼ି ନଗର ଶୋଭେ କଲନାଦିନୀ ।
ନଦୀପୁଳିନମାନ ଶୃଙ୍ଗ ପାଶର
ଶିଳାବନ୍ଧରେ ଭଙ୍ଗ ଅତି ସୁନ୍ଦର
ଅକଳଙ୍କ କୀରତ୍ତି ପୁରାକାଳର
ଘୋଷଇ ମର୍କଟେନ୍ଦ୍ର କେଶରୀଙ୍କର ।
ନଦୀଶଯ୍ୟାରେ ଭ୍ରମେ କେତେ ତରଣୀ
ଦୋଳାଇ ସ୍ୱଶିଖରେ ପତାକା-ବେଣୀ,
ଭାସନ୍ତି ତରଙ୍ଗରେ ନଦୀବକ୍ଷରେ
ମତ୍ତ ମରାଳ ଯଥା ସର ଅନ୍ତରେ ।

ଅଦୂରେ ନଗରର ହୃଦୟ ମଣ୍ଡି
"ରାଜେ କ ଘର ମଧ୍ୟେ ସୁଧାପଦଣ୍ଡି"

ତଥା ଶୋଭଇ ବାରବାଟୀ ପ୍ରାସାଦ,
ଭାଗ୍ୟବନ୍ତମାନେ ମନେ ଲଭ ବିଷାଦ ।

ଦେଖିବ ଯେବେ ତାର ଦୁର୍ଦ୍ଦଶାମୟ
ଛବି ଶୋଭନ ତୁମ୍ଭେ ମାହାରରାୟ,

ସ୍ମର ଉତ୍କଳଜାତି ଦୀନ ଅବସ୍ଥା
ନିଶ୍ଚେ ଜନ୍ମିବ ତବ ହୃଦୟେ ବ୍ୟଥା ।

ତା ପ୍ରତୀଚୀ ଅଞ୍ଚଳେ ଦେବେନ୍ଦ୍ରାଳୟ
ସମାନ ରାଜେ ଯେଉଁ ସୌଧନିଳୟ

ସେ ଦର୍ପ୍ୟ ଭଞ୍ଜବଂଶ କୁମୁଦବନ—
ଉଲ୍ଲାସନକାରକ ତାରାରମଣ

ରାଜା ରାଜେନ୍ଦ୍ରନାରାୟଣ ଭଞ୍ଜଙ୍କ
କୀର୍ତ୍ତି-ପତାକା ଶିରେ ବହ୍ନ ନିଃଶଙ୍କ ।

ପାର୍ଶ୍ୱେ ଶୋଭଇ ତାର ଅତି ରୁଚିର
ଉନ୍ନତ ବୃତ୍ତାକାର ଚୂର୍ଣ୍ଣ ପ୍ରାଚୀର,

ସ୍ୱର୍ଗକାନନ ସମ କୁସୁମବନ
ଜହିଁ ହୋଇଛି ଅତିଶୟ ଶୋଭନ ।

ବକୁଳ ପୁଷ୍ପାନ୍ୱିତ ବଲ୍ଲୀନିକରେ
ମତ୍ତ ରୋଲମ୍ବ ସଦା ମନେ ଗୁଞ୍ଜରେ,

ପକ୍ଷୀ ସଙ୍ଗୀତେ ମିତ୍ର ! ସେଠୁ କାନନ
ଉଲ୍ଲସେ ବାଣୀକର ବୀଣା ସମାନ

ପକ୍ୱଫଳମଣ୍ଡିତ ଦ୍ରୁମନତସ୍ୱ
କୁଳାଙ୍ଗନା ସଦୃଶ ମଧୁରମସ୍ୱ

ଶିର ନୂଆଇଁ କ୍ରମେ ମଧ୍ୟପ୍ରଦେଶେ
ବିତରନ୍ତି ସୁଫଳ ସଦା ହରଷେ ।

ଅଗ୍ରେ ସ୍ୱଚ୍ଛ ଆଦର୍ଶ ସମ ବିରଳ
ତଟପାଦପଶୋଭି ସରଯୁଗଳ

ମଣ୍ଡି ତୀରପ୍ରଦେଶ ନାରିକେଳର
ଶିରପଲ୍ଲବେ ଦଶେ ଅତି ସୁନ୍ଦର ।

ଦରବିକାଶ କୋକନଦମଣ୍ଡଳୀ
ଭାବେ କୁମୁଦବକ୍ଷେ ନୟନ ଢାଳି

ଢାଳନ୍ତି ପ୍ରେମମଧୁ ହର୍ଷବଦନେ
ଅନାଇଁ ପ୍ରାଚୀକୂଳେ ରଙ୍ଗ ତପନେ ।

କ୍ରୀଡ଼ନ୍ତି ଜଳେ ନାନା ଜଳବିହଙ୍ଗ
ଗାଇ କନକାଧୀଶ ଯଶ ପ୍ରସଙ୍ଗ,

ପୂଜନସ୍ତମ୍ଭେ ବସି ମତ୍ତ ମୟୂର
ଉଚ୍ଚୁଚ୍ଛେ କେକାଧ୍ୱନି କରେ ପ୍ରଚୁର,

ଉଦ୍ୟାନ ତରୁକୁଞ୍ଜେ ବସି ନିକଟେ
ମଦମତ୍ତ କପୋତ ମଧୁରେ ରଟେ ।

ସେ ସରେ ଆସି କେତେ ନବନାଗରୀ
ନୀଳଲୋଚନା ନବ-ଭୂଷଣାଗରୀ
କରିବାବେଳେ ନୀରେ ଗାତ୍ର ମଜ୍ଜନ
ହୁଏ ସରସଲିଳ ସ୍ୱର୍ଣ୍ଣବରନ ।
ଫୁଟି ଉଠିବା ପରି ରକ୍ତ କମଳ
ଜଳେ ଭାସଇ ତାଙ୍କ ମୁଖକମଳ,
ଫିଟି ଖେଳଇ ନୀଳ କୁନ୍ତଳବେଣୀ
ସରସଲିଳେ ଯଥା ଲହରୀବେଣୀ ।
ଉନ୍ନତ ବକ୍ଷୋଜାଳୀ କୁମ୍ଭସକଳେ
ଅରପି ତନୁଲତାଭାର ସେ ଜଳେ
ସନ୍ତର ଯିବାବେଳେ ନବୀନାଗଣ
ହୁଏ ଦୁର୍ଲ୍ଲଭ ଶୋଭା ତହିଁ ମିଳନ ।
ପୂଜିବାପାଇଁ ଶଚୀପତି ପଯୃର
ଗଲେ ଲମ୍ଫାଇ ପାରିଜାତକ ହାର ।
ଉଡ଼ନ୍ତି ନାକ ସତେ ନଭପ୍ରାଙ୍ଗଣେ
ଭୁରୁଶୋଭନୀ ସ୍ୱର୍ଗ ଅଙ୍ଗନାଗଣେ ।
ବ୍ରାହ୍ମଜନ୍ୟମଣ୍ଡଳୀରେ ଯେ ଗୁଣବାନ
ସ୍ୱଗୁଣେ ଅର୍ଜି ଅଛି ଖ୍ୟାତି ମହାନ
ଆରୋହିଛନ୍ତି ସର୍ବ ଶିର ପ୍ରଦେଶେ
ବିଦ୍ୟା-ବିନୟ-ରତ୍ନମଣ୍ଡିତ ବେଶେ ।

ଯାଙ୍କ ଉଦାର ହୃଦଭାବସମ୍ପତ୍ତି
ଲଭି ଜନରଞ୍ଜନ ବୃଟିଶପତି

କରିଛନ୍ତି ବରଣ ମନ୍ତ୍ରିପଦରେ
ଅର୍ପି ସାମ୍ରାଜ୍ୟ ଭାର ତାଙ୍କ ଶ୍ରୀକରେ ।

କନକାପତଙ୍କର ପୁର ଦକ୍ଷିଣେ
ବାରବାଟୀ ଦୁର୍ଗର ଅଗ୍ନେୟ କୋଣେ

ଉଦ୍ୟାନବମଣ୍ଡିତ ମୋର ନିଳୟ
ଦେଖିବ ନୀହାରେଶ ! ସୁଷମାମୟ ।

ନାନା ବୈମନ୍ତୀ ଲତା ତାର ଉଦ୍ୟାନ
ଧରିଥିବ ବିମଳକାନ୍ତି ମହାନ,

ଅଗ୍ରେ ପ୍ରଶସ୍ତ ରାଜପଥ ତାହାର
ଯଥା ପ୍ରବାଳମାଳା ମହୀବାଳାର ।

ସେ ପଥେ ନବ-ରୁଚି-ବେଶଶାଳିନୀ
ବିହରୁଥିବେ କେତେ ବରରମଣୀ,

ଦେଖି ତାଙ୍କର ମାଙ୍ଗଭଙ୍ଗୀ ନୂତନ
ବହ୍ନିତ ହେବ ନିଶ୍ଚେ ତୁମ୍ଭର ମନ ।

ମୁଖପଦ୍ମେ ପୂରାଇ ହର୍ଷ ବିଳାସ
ବୟସୀ ସଙ୍ଗେ ମନେ ଲଭି ଉଲ୍ଲାସ

ଲଜ୍ଜାବନତା ସେହି ନବୀନାଗଣ
ଶୋଭୁଥିବେ ଅପ୍ସରୀଦାମ ସମାନ ।

ଅଦୂରେ ଶୋଭେ ତାର ରମ୍ୟ ସରସୀ
ତା ନୀରେ ଇନ୍ଦୀବର ହସେ ବିକଶି,
ସୁଖେ କ୍ରୀଡ଼ନ୍ତି ତହିଁ ହଂସ ସାରସ
ଉଚରି କଳପୂର୍ଣ୍ଣ ମଧୁର ଭାଷ ।
ବିତଳ ତଳେ ବସି ମୋର ହର୍ମ୍ୟର
ସବୁ ଶୋଭା ଦେଖିଲେ ମେଘାମ୍ବର,
କ୍ଷଣ ମାତ୍ରକେ ମନ ଶ୍ରାନ୍ତ ସକଳ
ବିନାଶ କରେ ମନ୍ଦ ବାୟୁହିଲ୍ଲୋଳ ।
ସ୍ଫଟିକ ଯେଉଁ ପ୍ରକୋଷ୍ଠ ସର୍ବ ଉପରେ,
ସେ ମୋ ବିହାରସ୍ଥାନ ଘେନ ମନରେ ।
ତହିଁ ବିଷାଦ ମନେ ଯୋଷା ଉତ୍ତମା
ବସିଥିବ ଏକା ମୋ ରତିପ୍ରତିମା ।
ଖେଦପ୍ରଭାବେ ହୋଇ ଅତ୍ୟନ୍ତ ହୀନ
ଶୁଖାଇ ବସିଥିବ ମୁଖ-ନଳିନ ।
ଝରୁଥିବ ନେତ୍ରପଙ୍କଜୁ ନୀର
ଯଥା ଏ ଶୀତକାଳେ ଭୂମେ ଶିଶିର ।
ତା ସୁଷମା ମଳିନ ଦେଖି ନୀହାର,
ନିଶ୍ଚେ ବିଷାଦ ଜାତ ହେବ ତୁମ୍ଭର ।
ସ୍ୱଭାବେ ସାଧୁ ମନ ପର ଦୁଃଖରେ
କୃଏ କାତର ଦୁଃଖ ଦେଖି ନେତ୍ରରେ ।

ତନୁ ତନ୍ୱଙ୍ଗୀ ବାଳା ନୀଳଲୋଚନା
ମତ୍ତମରାଳଲୀଳାଞ୍ଚିତଗମନା

ସ୍ମିତଗଣ୍ଡମଣ୍ଡଳା ଜବା-ଅଧରୀ
ସ୍ତନଭାରାବନତା ଗାତ୍ରବଲ୍ଲରୀ

ଶମ୍ପାକନକକାନ୍ତିଜିତବରନା
ମୃଦୁ ମୃଣାଳଗଞ୍ଜୀ ବାହୁଶୋଭନା

ଯୁବତୀଶିରୋମଣି ନବରଙ୍ଗିଣୀ
ଅଟେ ନୀହାରଶ୍ରେଷ୍ଠ ! ମୋର କାମିନୀ ।

ପ୍ରେମପ୍ରତିମା ମୋର ଅଟେ ସେ ଯୋଷା
ମହୀମହିଳା-ଶିରମୁକୁଟଭୂଷା ?

ବିଧାତା ଅବଧାନେ ଅଜ ନୀହାର,
ଭୋଗ୍ୟ ବିଚ୍ଛେଦଦଶା ପ୍ରାଣେ ତାହାର ।

ତୁମ୍ଭ ତୁହିନପାତେ ନୀହାରପତି,
ବିଶଦ ମୁଖପଦ୍ମ ବିମଳଜ୍ୟୋତି

ମଳିନ ଭଜିଥିବ ନବ ବାଳାର
ପାଇ ବିଚ୍ଛେଦାନଳତାପ ପ୍ରଖର,

ଲୋଳ ତରଳ ନୀଳ ନୟନ ବେନି
ତରଳ ତପ୍ତ ଅଶ୍ରୁଶୀକର ଧେନି

ଭଜିଥିବ ଅରୁଣାରୁଣ ବରନ
ଅଶ୍ରୁସଲିଳେ ହୋଇ ସଦା ସଘନ ।

ଜବାଧଶ୍ମି ଅଧର ଉଷ୍ଣ ନିଶ୍ୱାସ
ବାଜି ପାଟଳୀପୁଷ୍ପରାଜି ସଂକାଶ

ଭଜିଥିବ ମଳିନ ଅଧରରାଗ
ଦେଖି ବିରାଗବଶେ ସୁଖସମ୍ଭୋଗ ।

କରପଲ୍ଲବେ ଥୋଇ ମୁଖ-ନଳିନ
ବସିଥିବ ନବୀନା ସ୍ମୃତିରେ ଭୁଲିନ !

ବହି ଅଶ୍ରୁସଲିଲ ନୟନୁ ତାର
ଭିଜୁଥିବ ତା ବକ୍ଷ-ମୁକୁତାହାର,

ପୃଷ୍ଠରେ ଲୋଟୁଥିବ ନୀଳ କୁନ୍ତଳ
ସ୍ୱର୍ଣ୍ଣାଦ୍ରି ଶିରେ ଯଥା କାଳିନ୍ଦୀଜଳ

ବିସ୍ତାରି ପ୍ରେମମୟ ଲୀଳାଲହରୀ
ଧାଏଁ ଗିରିକନ୍ଦରରମ୍ୟ.ବିଦାରି ।

ପୁଲକି ନାଚୁଥିବ ଗଣ୍ଡ ତାହାର,
ଉଠୁଥିବ କପୋଳେ ଦୁର୍ବିକାର,

କର୍ଣ୍ଣେ ବିଲମ୍ବି ନୀଳ ଚୂର୍ଣ୍ଣକୁନ୍ତଳ
ବ୍ୟାପିଥିବ ସୁରଙ୍ଗ ଗଣ୍ଡମଣ୍ଡଳ ।

ତମସ ଗ୍ରାସ କଲା ପରି ଚନ୍ଦ୍ରମା
ଭଜିଥିବ ତା ମୁଖ-ପଦ୍ମସୁଷମା,

ମିଳନ କାମନାରେ ବାଳା ମୋହର
ସୁରସମୟ କରିଥିବ ଅନ୍ତର ।

ଗୁରୁଜନଭୟରେ ଭାବ ଗୋପନ
କରିବାବେଳେ ମୋର ରମାରତନ

ମିଳନାକାଙ୍କ୍ଷା ତାର ଗଣ୍ଡମଣ୍ଡଳ
ଆଣି ହୋଇବ ମନମୋହନଶୀଳ ।

ଅଗ୍ରରଜପଥରେ ଦେଖି ତନ୍ୱଙ୍ଗୀ
କାନ୍ତ କରପରଶ-ସୁଖାନୁଭୋଗୀ

କୃଷ୍ଣକୁନ୍ତଳା ନବ ନବୀନାଗଣ
ମନେ ମଜ୍ଜନ କରୁଥିବ ଧାରଣ ।

ବାସ ଅନ୍ତରେ ବାଳା ମୋ ଭାବ ସ୍ମର
ଗୃହକର୍ତ୍ତବ୍ୟ ଦେଉଥିବ ବହୁର,

ନିରେଖି ଗୁରୁଜନ ଅଗ୍ରଦେଶରେ
ଚମକି ରହୁଥିବ ଲଜ୍ଜାବଶରେ ;

ବୟସୀଗଣ ଆସି ଯଦ୍ୟପି ପାଶେ
ଭାଷିବେ ରସାଳାପ ସେ ପରିହାସେ,

ଶରଦଚନ୍ଦ୍ରମୁଖ କରିବ ନତ
ହୋଇ ମୋ ଭାବଭାବନାରେ ନିରତ ।

ବସି ପ୍ରାସାଦ ଅଙ୍କେ ଅତି ମଧୁରେ
ଗାଇବାବେଳେ ଗୀତ ହାରମୋନିରେ

ନୟନ ନୀରେ ଭିଜି ଯନ୍ତ୍ରସକଳ
ସ୍ୱର ମଧୁର ତାର ହେବ ବିକଳ ।

ବିରହବହ୍ନି ଶୋଷୁଥିବ ଜୀବନ
ଥରେ ତା ତପ୍ତତନୁ କର ସ୍ପର୍ଶନ ।

କାମଗରଳଜ୍ୱାଳା କରିବ ଶାନ୍ତ
କର ତା ହୃଦେ ତୁମ୍ଭ ଶିଶିରପାତ ।

ଗୃହକର୍ମେ ନରତା ଥାଇ ନବୀନା
ଶୂନ୍ୟ ଗଣୁଥିବ ତା ପ୍ରାଣ ମୋ ବିନା ।

ପତିବିରହାନ୍ତର କବିତାବଳୀ
ନେତ୍ରୁ ତା ନୀରଧାର ପଡ଼ିବ ଗଳି ।

କାତରେ ଥୋଇ ପଥପ୍ରାନ୍ତେ ନୟନ
ଲକ୍ଷି ନକଟେ ମୋର ଶୁଭାଗମନ

ତରଳ ନେତ୍ରୁ ଅଶ୍ରୁ ଜୀବନକଣ
ଢାଳବାବେଳେ ମୋର ନାଗ୍ରରତନ,

ଦେଖି ମୋ କାମିନୀକୁ ମାହାରବର,
କହିବ ଦୟା କର ଆଗେ ତାହାର,

"ଜୀବନେ ଅଛି ତୋର ହୃଦୟଧନ,
ନୁହ କାତର ମନେ ଯୋଷାରତନ ।

ବନ୍ଧୁହୂରୁ ମୁଁ ତାର ବାରତା ଧର
ଅସିଛି ତୋ ନକଟେ ନବନାଗରୀ,

ଅସିବେ ଅଳ୍ପ ଦନେ କାନ୍ତ ତୋହର,
ନ ହୁଅ ଜବାଧରି ! ମନେ କାତର ।

ଫେରିବା ମାତ୍ରେ ମୋର ନବ ମୁକୁଳ-
ପୂର୍ଣ୍ଣ ବସନ୍ତକାଳ ହେବ ମଞ୍ଜୁଳ ।
ରସାଳ ଶିରେ ବସି ପଞ୍ଚମେ ତାନ
କରିବ ଯେବେ ପିକ ମଧୁର ଗାନ,
ଆଣିଦେବ ସେ ତୋର ପ୍ରାଣନାଥଙ୍କୁ
ବଚନଖିନା ତୋର ଅବଧାନକୁ
ନାହିଁ ମୋ ଏ ବଚନେ କିଛି ଛଳନା,
ସ୍ଥିରମାନସେ ଭୁଲ ଧଇ୍ୟମଣ୍ଡନା ।
ଯେଣୁ ତୋ ପ୍ରାଣନାଥ ହୃଦସମ୍ପତ୍ତି
ଆଗତ ତୋ ସମୀପେ ମୁହିଁ ସୁଦନ୍ତୀ ।
ତୋଠାରୁ ବଳି ତୋର ଜୀବନଧନ
ଆଜ ଅନୁଭବଇ କାମବଦନ ।”
ଶୁଣି ଏ ମଧୁବାଣୀ ଉତ୍କଣ୍ଠାଭରେ
ମୁଖ ଟେକିଲେ ବାଳା ଅଗ୍ରଦେଶରେ
ଦେଖିଲେ ତା ବଦନ ମୋହନଛବି
ନିଶ୍ଚୟ ଭୁମ୍ଭ ହୃଦ ଗଳିବ ଦ୍ରବି ।
ପ୍ରିୟବାରତା ଶୁଣି ପ୍ରିୟବନ୍ଧୁର
ମୁଖପଦ୍ମ ହରଷ ହେବ ବିଧୁର,
ପ୍ରିୟ ମିଳନସୁଖ ନିଜ ମାନସେ
ଅନୁଭବିବ ବାଳା ଅତି ହରଷେ ।

ଫୁଟି ଉଠିବ ତାର ମୁଖକମଳ
ଭରି ପ୍ରେମମଧୁରେ ଗ୍ରଗଲ୍ଭମଲ,
ଝୀଡ ହୋଇବ ରଙ୍ଗ ଗଣ୍ଡମଣ୍ଡଳ
ମିଳନକାମନାରେ ମୋର କେବଳ ।
ପରକଷ୍ଟ ମୁଅନ କଲେ ମୀହାର !
ବାଣକରତା ନଜ ହୃଦେ ତାହାର
ଲଭେ ଯେ ସୁନିର୍ମଳ ଆନନ୍ଦରସ
ଲଭ ତା ତୁମ୍ଭେ ବେଗେ ହୋଇ ସନ୍ତୋଷ ।
କହିବ ପ୍ରିୟାଙ୍କ ପାଶେ ଥରେ ମୀହାର,
ପାନପୋଷରେ ଛନ୍ତି ନାଥ ତୋହର ।
ପଶ୍ଚରଛନ୍ତି ତୋର ମନ କୁଶଳ,
ତୋ ବରହେ ତୋ ନାଥ ସଦା ଦୁର୍ବଳ ।
ଅଭାଗ୍ୟ ନପୀଡ଼ନେ ତୋ ବନ୍ଧୁଦେହ
ନତ୍ୟ ଧ୍ୱଂସଇ ପ୍ରଶ୍ବାଶୁଗ ଅଦେହ ।
ତୁ ଯଥା ତାଙ୍କୁ ହୃଦ ଲୋତକମୀର
ତେଜୁ ତୋଠାରୁ ସେ ତ ଅତ ଅଧୀର ।
ରୋଧିଲା ମାର୍ଗ ଧାତା ହୋଇ ନର୍ଦ୍ଦୟ,
ତୁ ତ ଏକା ତାଙ୍କର ସର୍ବ ଆଶ୍ରୟ ।
ବଦନ-ଶତପତ୍ର ଚୁମ୍ବନ ଆଶେ
ବୃଷାଦେ ନାଥ ତୋର ଦୂର ପ୍ରବାସେ

କ୍ଷିପ୍ତ ଉନ୍ମତ୍ତପ୍ରାୟ ଭ୍ରମନ୍ତି ଗିରି
ଚିନ୍ତି ସର୍ବଦା ଧନ ଚୋ ଅଙ୍ଗଶିରୀ ।

ପୁତ୍ରବିଚ୍ଛେଦବ୍ୟଥା ପିତା ହୃଦୟ
କରିଅଛି କି ନାହିଁ ଏବେ ଅଥୟ !

କହ ଏ ଅଭିଜ୍ଞାନ ନୀହାରବର,
ସର୍ବ ସନ୍ଦେହ ତାର ହୃଦୟୁ ହର ।

ଏ ବାଣୀ ଦୟା ବହି ଶିଶିରଧର !
ପ୍ରୀତିପ୍ରତିମା ପାଶେ ପ୍ରକାଶି ମୋର,

ହୃଦୟ ଘୋର ଦୁଃଖ କର ହରଣ,
ଯେଣୁ ସଜ୍ଜନବୃନ୍ଦେ ତୁମ୍ଭ ଗଣନ ।

ଅନୁସରୁଛ ଯେଉଁ ନୀରବବନ୍ଧୁ
ମଣେ ମୁହିଁ ତୁମ୍ଭଙ୍କୁ କରୁଣାସିନ୍ଧୁ,

ଏଣୁ ମୋ ଅନୁରୋଧ ତୁମ୍ଭ ଶ୍ରୁତିରେ
ଅନାଦର ନ ହେବ ଭାବେଁ ମନରେ ।

ପରଶି ହିମ ତରୁଶିଖରଦେଶ
ନାଶି ପଦ୍ମାଳୀ ତାର ସୁଖ ଅଶେଷ

ସମ୍ବାଦ ମଧୁ ଆଗମନେ ବାନ୍ଧବ !
ଏଣୁ ତୁମ୍ଭେ ସଜ୍ଜନବୃନ୍ଦେ ସାଧବ ।

ମହତ ସୁଜନର ଏମନ୍ତ ରୀତି,
ଦୀନ ଅଭୀଷ୍ଟଦାନେ ତାଙ୍କର ମତି

ସଦା ଜାଗ୍ରତ ଏହ୍ନ ବଣ୍ୟମଣ୍ଡଳେ,
ଗାଅନ୍ତୁ ଧୀରଗଣ ଏ ଗୀତ ବଳେ ।

ବାକ୍ୟସଙ୍କେତେ ମୋର ଛ ପ୍ରୟୋଜନ,
ମଉନେ ମୋ ଉଦ୍ଦେଶ୍ୟ କର ପୂରଣ

ଯାଅ ଅଭୀଷ୍ଟଦେଶେ ମାହାରବର !
ନୀଳାମ୍ବୁ ଚଲକାରେ ସୁଖେ ବହର ।




Printed by V. Kar, The U. S. Press, Cuttack.

